# ଧର୍ମରାଜ୍ୟ

## ଦ୍ୱିତୀୟ ଖଣ୍ଡ



ରୁଦ୍ରପାଟେ ଯେ ମଶାଣିରେ
ନରକପାଳ ଧରି କରେ
ସେ ଯୋଗୀଶ୍ୱର ସର୍ବ ତ୍ୟାଗୀ
ମହା ବିପ୍ଳବୀ ସେହୁ ଶିବ
ନିରସ୍ତ୍ର ତା ହାତ ମୁଠାରେ
ପୁଞ୍ଜିପତି ଯେ ଉଠ୍‌ବେଠ୍‌ବ

ପ୍ରେତ ଅନ୍ନ ଯେ ଭୁଞ୍ଜିପାରେ,
ମୃତ୍ୟୁ ସଙ୍ଗେ ଯେ କ୍ରୀଡ଼ା କରେ,
ସର୍ବହରାର ପ୍ରତିନିଧି
ଦୁର୍ବଳ ଦରିଦ୍ର ବାନ୍ଧବ ।
ସବୁ ଶକତି ରହେ ଠୁଳେ ।
କ୍ରୀଡ଼ା ପୁତ୍ତଳି ତା ହାତରେ ।

# ଧର୍ମରାଜ୍ୟ



## ଦ୍ୱିତୀୟ ଖଣ୍ଡ

[ ଦୁବାର ଇନ୍ଦ୍ର, ପ୍ରବୃତ୍ତି ଓ ଅସନ୍ତର ଅପୂର୍ବ ଲୀଳା ]

ରଚନାଶିଳ୍ପୀ:—ଲକ୍ଷ୍ମଣ

ପ୍ରଥମ ମୁଦ୍ରଣ
୧୯୫୦


ଚିତ୍ରଶିଳ୍ପୀ:—ଶ୍ରୀ ପରମାନନ୍ଦ ନାୟକ,
ପଙ୍କପାଳ ନିଃ ପ୍ରାଃ ସ୍କୁଲ୍
ପୋଃ ପଙ୍କପାଳ
କଟକ



ସାରସ୍ୱତ ପ୍ରେସର ଅନୁକୂଲ୍ୟରେ
ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ ଦ୍ୱାରା
ପ୍ରକାଶିତ

ମୂଲ୍ୟ—ଠ ୧। ଦେଢ଼ ଟଙ୍କା

# ଅଭିମତ

"ଧର୍ମରାଜ୍ୟ" ସରକାର, ବିରୁଦ୍ଧ ରାଜନୈତିକ ଦଳ ଓ ଜନ-ସାଧାରଣ ସମସ୍ତଙ୍କୁ ଚେତନା ଦେଇପାରିବ ବୋଲି ବିଶ୍ୱାସ ।

**ଶ୍ରୀ ପଦ୍ମନାଭ ରଥ**
ଛତ୍ରପଡ଼ା

ବର୍ତ୍ତମାନ ଯୁଗର ପରିସ୍ଥିତିକୁ ପୌରାଣିକ ଯୁଗୀୟ କଳ୍ପନାରେ ଭାଗବତ ବୃତ୍ତରେ ପ୍ରକାଶ କରାଯାଇଛି ।

ଧର୍ମରାଜ୍ୟ ପ୍ରଥମ ଭାଗ ସମ୍ବନ୍ଧରେ ୨୬-୭-୫୦ ସମାଜର ମନ୍ତବ୍ୟ—

ବର୍ତ୍ତମାନର ରାଜନୈତିକ ଅବସ୍ଥା ଇତ୍ୟାଦି ସଙ୍ଗେ ଖାପ୍ ଖୁଆଇ ପୁସ୍ତିକାଟି ଲେଖାଯାଇଥିବାରୁ ବର୍ତ୍ତମାନର ରାଜନୈତିକ ପରିସ୍ଥିତି ସମ୍ପର୍କରେ ଲେଖକଙ୍କର ସ୍ପଷ୍ଟ ଧାରଣା ଏଥିରୁ ସୂଚିତ ହେଉଛି ।

ଧର୍ମରାଜ୍ୟ ପ୍ରଥମ ଭାଗ ସମ୍ବନ୍ଧରେ ୨୫-୭-୫୦ ପ୍ରଜାତନ୍ତ୍ରର ମନ୍ତବ୍ୟ—

"ଧର୍ମରାଜ୍ୟ" ସବୁ ଶ୍ରେଣୀର ଲୋକଙ୍କ ପକ୍ଷରେ ବିଶେଷ ଆଦୃତ ହେବ ଏଥିରେ ସନ୍ଦେହ ନାହିଁ ।

ମୌଲବୀ ମହମ୍ମଦ ଅବଦୁସ୍ କୁଦସ
ତେଣ୍ଡାକୁଡ଼ା

---

# ବିଷୟ ସୂଚୀ

## ଚତୁର୍ଥ ଅଧ୍ୟାୟ



## ପଞ୍ଚମ ଅଧ୍ୟାୟ



---

# ଭୂମିକା

ଫୁଟବଲ୍ ମ୍ୟାଚରେ ଖେଳ ଚାଲିଥିବାବେଳେ ଯେଉଁମାନେ ଖେଳୁଥାନ୍ତି, ସେମାନେ ଯେତେ ସୁଦକ୍ଷ, ଖେଲଓ୍ୱାର୍ଡ଼ ହେଲେ ବି ନିଜର ଦୋଷଟି ଦେଖିପାରନ୍ତି ନାହିଁ । ଦର୍ଶକମାନଙ୍କ ମଧ୍ୟରେ ଯେଉଁମାନେ ସୁଦକ୍ଷ ଖେଲଓ୍ୱାର୍ଡ଼-ମନୋବୃତ୍ତିବିଶିଷ୍ଟ ଥାଆନ୍ତି, ସେହିମାନେହିଁ ଫୁଟବଲ୍ ଖେଳରେ ନିଯୁକ୍ତ ଥିବା ଖେଳୁଆଳୀମାନଙ୍କର ଦୋଷତ୍ରୁଟି ଦେଖିପାରନ୍ତି ଏବଂ ଅନୁକୂଳ ନିର୍ଦ୍ଦେଶାଦି ଦେଇ ପାରନ୍ତି ।

ସମାଜକୁ ଗୋଟାଏ ବଡ଼ ଧରଣର କ୍ରୀଡ଼ାଭୂମି ସଙ୍ଗେ ତୁଳନା କରାଯାଇ ପାରେ । ଫୁଟବଲ୍ ଖେଳ ପଡ଼ିଆରେ ମୋଟାମୋଟି ତିନି ଶ୍ରେଣୀର କ୍ରୀଡ଼ା ରସିକ ଥାଆନ୍ତି । ପ୍ରଥମ ଦ୍ୱିତୀୟ ଶ୍ରେଣୀର କ୍ରୀଡ଼ା ରସିକମାନେ ଦୁଇ ବିରୋଧୀ ପକ୍ଷର ଖେଳୁଆଳୀ ଓ ସେମାନଙ୍କର ପକ୍ଷସମର୍ଥନକାରୀ ଅଟନ୍ତି । ଦର୍ଶକମାନେ ତୃତୀୟ ଶ୍ରେଣୀର କ୍ରୀଡ଼ା ରସିକ ଅଟନ୍ତି । ଖେଳ ଦେଖିବାରେହିଁ ଏମାନେ ବିଶେଷ ଆନନ୍ଦ ଅନୁଭବ କରନ୍ତି । ବେଳେ ବେଳେ ଏମାନେ ହାରିବା ପକ୍ଷକୁ ସହାନୁଭୂତି ଦେଖାନ୍ତି; ବେଳେ ବେଳେ ଜିତିବା ପକ୍ଷର ବିଜୟାନନ୍ଦରେ ନିଜେ ବି ଉନ୍ମତ୍ତ ହୋଇ ପଡ଼ନ୍ତି । ଦୁଇ ପକ୍ଷରେ ହାରଜିତ ଫଳରେ ବିବାଦ ଉପସ୍ଥିତ ହେଲେ ଏମାନଙ୍କ ମଧ୍ୟରୁ କେତେକ ବାସ୍ତବ କ୍ଷେତ୍ରରେ ବିବାଦରେ ଯୋଗ ଦିଅନ୍ତି ।

ଅନ୍ୟମାନେ ବିବାଦରେ ଯୋଗ ନ ଦେଲେ ବି ମନେ ମନେ ଦୁଇ ପକ୍ଷରୁ କୌଣସି ଗୋଟିକୁ ସମର୍ଥନ କରନ୍ତି । ଏହି ଦର୍ଶକମାନେ ଏକ ଉନ୍ମାଦର ସ୍ତରରେ ଥାନ୍ତି, ଯେଉଁ ଉନ୍ମାଦକୁ ଜନତା-ଉନ୍ମାଦ (Mob-Hysteria) କୁହାଯାଏ ।

ଏହି ଦର୍ଶକମାନଙ୍କ ମଧ୍ୟରୁ ମୁଷ୍ଟିମେୟ କେତେକ କ୍ରୀଡ଼ା-ରସିକ ଥାନ୍ତି, ଯେଉଁମାନଙ୍କୁ କି ୪ର୍ଥ ଶ୍ରେଣୀର କ୍ରୀଡ଼ାରସିକ କୁହାଯାଏ । ଏମାନେ ଖେଳଟାକୁ ବାସ୍ତବ ନ ଭାବି ତାତ୍ତ୍ୱିକ ଦୃଷ୍ଟିରେ ଦେଖନ୍ତି । ସବୁ କ୍ରୀଡ଼ାରସିକଙ୍କ ମଧ୍ୟରେ ଏହି ମୁଷ୍ଟିମେୟ ଅନାସକ୍ତ ଦର୍ଶକମାନେ ହିଁ ଶ୍ରେଷ୍ଠ ଅଟନ୍ତି । କାରଣ, ଅନ୍ୟମାନେ ଖେଳଟାକୁ ଖେଳ ଭାବରେ ନ ଭାବି ଅନର୍ଥରେ ପଡ଼ନ୍ତି—ମୁଣ୍ଡ ଫଟାଫଟି ଓ ଖଣ୍ଡିଆ ଖାବରା ହୁଅନ୍ତି; କ୍ରୋଧ ଓ ଉତ୍ତେଜନାର ବଶବର୍ତ୍ତୀ ହୁଅନ୍ତି । କିନ୍ତୁ ଏହି ମୁଷ୍ଟିମେୟ ଅନାସକ୍ତ କ୍ରୀଡ଼ାରସିକମାନେ ଖେଳଟା ଯେ ଖେଳ ଛଡ଼ା ଆଉ କିଛି ନୁହେଁ, ଏହା ଧାରଣା କରିବାରୁ କୌଣସି ପ୍ରକାର ଉତ୍ତେଜନା ବା କ୍ରୋଧାଦିର ବଶବର୍ତ୍ତୀ ହୁଅନ୍ତି ନାହିଁ ।

ସମାଜରୂପୀ କ୍ରୀଡ଼ାଭୂମିରେ ଦୁଇ ଶ୍ରେଣୀର କ୍ରୀଡ଼ାରସିକ ଥାନ୍ତି । ଯେଉଁମାନଙ୍କର ଧନତୃଷ୍ଣା ଓ ସଞ୍ଚୟ ପ୍ରବୃତ୍ତି ଖୁବ ତୀକ୍ଷ୍ଣ ଥାଏ, ଏବଂ ଯେଉଁମାନଙ୍କର କ୍ଷମତା ତୃଷ୍ଣା ଖୁବ୍ ଉତ୍କଟ ଥାଏ, ଏହି ଦୁଇଶ୍ରେଣୀର ବ୍ୟକ୍ତିମାନଙ୍କୁ ଫୁଟବଲ ଖେଳରେ ନିଯୁକ୍ତଥିବା ଦୁଇପକ୍ଷର ଖେଳୁଆଳୀ ଓ ସେମାନଙ୍କର ସମର୍ଥକ ସଙ୍ଗେ ତୁଳନା କରିଯାଇପାରେ । ଏ ଦୁଇ ଶ୍ରେଣୀର ବ୍ୟକ୍ତିମାନେ ପରସ୍ପର ସଙ୍ଗେ ସଂଘର୍ଷ କରି ପରସ୍ପରକୁ ହରାଇବାକୁ ବସନ୍ତି ।

କ୍ଷମତାତୃଷ୍ଣାଗ୍ରସ୍ତ ବ୍ୟକ୍ତିମାନେ ଧନତୃଷ୍ଣାଗ୍ରସ୍ତ ବ୍ୟକ୍ତିଙ୍କଠାରୁ କୌଶଳରେ ଧନ ଛଡ଼ାଇନେଇ ସମାଜର ସେବାରେ ଲଗାନ୍ତି । ଧନ-

ତୃଷ୍ଣାଗ୍ରସ୍ତ ବ୍ୟକ୍ତିମାନେ କ୍ଷମତାତୃଷ୍ଣାଗ୍ରସ୍ତ ବ୍ୟକ୍ତିମାନଙ୍କର ସ୍ୱାର୍ଥପର-
ତାକୁ ଜଗନ୍ତି । ଧନତୃଷ୍ଣାଗ୍ରସ୍ତ ବୈଶ୍ୟ ଓ କ୍ଷମତାତୃଷ୍ଣାଗ୍ରସ୍ତ କ୍ଷତ୍ରିୟ
ପରସ୍ପରକୁ ଚେକ୍‌କରିବା ଦ୍ୱାରା ପରୋକ୍ଷରେ ସମାଜର ଉପକାରହିଁ
କରିଯାନ୍ତି ।

ନିଦ୍ରାହାର ବିହାର ସ୍ତରରେ ଥିବା ବ୍ୟକ୍ତିମାନଙ୍କୁ ସାଧାରଣ
ବା ତୃତୀୟ ଶ୍ରେଣୀର କ୍ରୀଡ଼ାରସିକ ସଙ୍ଗେ ତୁଳନା କରାଯାଇପାରେ ।
ଏମାନେ କେବଳ ସୁଖ ଆହାର, ସୁଖ ବିହାର ଓ ସୁଖ ନିଦ୍ରା
ଲୋଡ଼ନ୍ତି, ଏମାନେ ସଅର୍ଥପ୍ରୟାସୀ ବା କ୍ଷମତା ପ୍ରୟାସୀ ନୁହନ୍ତି ।
ଏମାନେ କୌଣସି ରକମ ଚିନ୍ତା କରିବାକୁ ପସନ୍ଦ କରନ୍ତି ନାହିଁ ।
ସାଧାରଣ ଅଜ୍ଞ ଦର୍ଶକମାନେ ଯେପରି ଫୁଟବଲ୍ ଖେଳ ନ ଜାଣି
ଖାଲି ଖେଳ ଦେଖିବାରେ ଆନନ୍ଦ ପାନ୍ତି, ଆହାର, ବିହାର-ନିଦ୍ରା
ସୁଖତତ୍ପର, ସଅର୍ଥ-ପ୍ରବୃତ୍ତିହୀନ ଓ କ୍ଷମତା-ପ୍ରବୃତ୍ତିହୀନ ଏହି
ଶୂଦ୍ରମାନେ କ୍ଷୁଦ୍ର ଶିଶୁ ପରି । ଏହିମାନଙ୍କଠାରେହିଁ ସବୁ ପ୍ରଳୟର
ଶକ୍ତି ନିହିତ ଥାଏ । ଏମାନଙ୍କ ଆନନ୍ଦ କେବଳ ସ୍ୱଚ୍ଛନ୍ଦ ଆହାର,
ବିହାର ଓ ନିଦ୍ରା, ଯହିଁରେ ବିଘ୍ନ ହେଲେ ଏମାନେ ପ୍ରଳୟ
କରିଦିଅନ୍ତି ।

ଧନକ୍ଷମତା ତ୍ୟାଗ କରି ସଂଯତାହାର-ବିହାର-ନିଦ୍ରାଯୁକ୍ତ
ସତ୍ୟାନୁସନ୍ଧିତ୍ସୁ, ମୁଷ୍ଟିମେୟ ବ୍ୟକ୍ତିମାନଙ୍କୁ ଚତୁର୍ଥ ଶ୍ରେଣୀର କ୍ରୀଡ଼ା-
ରସିକ ସଙ୍ଗେ ତୁଳନା କରାଯାଇ ପାରେ । ଏହିମାନଙ୍କ ନିର୍ଦ୍ଦେଶରେ
ସାମାଜିକ ଜୀବନର ଅଭିନୟଟି ଚାଲିଥିବାଯାଏ ସମାଜରେ
କୌଣସି ପ୍ରକାର ସମସ୍ୟା ଜାତ ହେଲେହିଁ ତାହା ସହଜରେ
ସମାହିତ ହୋଇଯାଏ ।

ଆହାର-ବିହାର-ନିଦ୍ରାମୂଳକ ଆସକ୍ତି ଏବଂ ଧନତୃଷ୍ଣା ଓ
ମମତାତୃଷ୍ଣାକୁ ତ୍ୟାଗ କରି ସତ୍ୟାନୁସନ୍ଧାନରେ ରତଥିବା

ବୈରାଗୀ ବା ଅବଧୂତମାନଙ୍କ ସଂଖ୍ୟା ଯେଉଁ ସମାଜରେ ଯେତିକି ବେଶୀ ଥାଏ, ସେହି ସମାଜର ସ୍ଥାୟିତ୍ୱ ସେତିକି ଅତୁଟ ରହେ ।

ବୈରାଗ୍ୟ ଏବଂ ବୈରାଜ୍ୟ (Anarchism) ଏ ଦୁଇଟି ଏକାର୍ଥ ବୋଧକ ଶବ୍ଦ । ଧନତୃଷ୍ଣା, କ୍ଷମତା ତୃଷ୍ଣା ଓ ନାମତୃଷ୍ଣାକୁ ତ୍ୟାଗ କରି ବୈରାଗୀ, ବା ଅବଧୂତ ହେବା ଫଳରେ ବ୍ୟକ୍ତି ଧନୀ ପାଖରେ ଓ କ୍ଷମତାଶାଳୀ ପାଖରେ ମଥା ନତ ନ କରିବାର ଶକ୍ତି ଲାଭ କରେ । ଏହି ଶକ୍ତିବଳରେ ବଳୀୟାନ୍ ହୋଇ ସେ କ୍ଷମତାତୃଷ୍ଣାଗ୍ରସ୍ତ ଉତ୍କଣ୍ଠେଠର ଓ ଶାସକଗୋଷ୍ଠୀକୁ ସାମାଜିକ ମଙ୍ଗଳସାଧନରେ ଖଟାଇପାରେ । ଅନ୍ଧକାରମୟ ଗିରିଗୁହାବାସୀ ବୈରାଗୀର ଅଲକ୍ଷିତ ନିର୍ଦ୍ଦେଶରେ ଭାବପ୍ରବଣ (Emotional) କ୍ଷତ୍ରିୟ ରୂପୀ ଉତ୍କଣ୍ଠେଠର ନିଜକୁ ଏକ ମଧୁସଂଗ୍ରାହକ ଯନ୍ତ୍ରଭାବରେ (Honey extractor) ରୂପାନ୍ତରିତ କରିନିଏ ଏବଂ ପୁଞ୍ଜିପତି ବୈଶ୍ୟମାନଙ୍କୁ ପୋଷା ମଧୁମକ୍ଷିକା ପରି ବ୍ୟବହାର କରି ସେମାନଙ୍କର ସଞ୍ଚିତ ଧନକୁ ଜଡ଼ତାର ସ୍ତରରେ ରହିଥିବା ଶିଶୁଭାବାପନ୍ନ ଶୂଦ୍ରମାନଙ୍କର ସୁଖ ଆହାର, ସୁଖ ବିହାର ଓ ସୁଖ ନିଦ୍ରାରେ ନିୟୋଜିତ କରେ । ଲୋକଲୋଚନରଅଗୋଚରରେ ରହିଥିବା ଗିରିଗୁହାବାସୀ ଫକିରହିଁ ସମାଜର ମୁକୁଟବିହୀନ ସମ୍ରାଟ ଅଟନ୍ତି । ବୈରାଗୀହିଁ ସମାଜର ପ୍ରକୃତ ଯନ୍ତ୍ରୀ; କ୍ଷମତା ତୃଷ୍ଣାଗ୍ରସ୍ତ ଉତ୍କଣ୍ଠେଠର କ୍ଷତ୍ରିୟ ଓ ଧନତୃଷ୍ଣାଗ୍ରସ୍ତ ବୈଶ୍ୟ ତାହାର ଯୋଡ଼ାଏ ଯନ୍ତ୍ର । ଏହି ଯନ୍ତ୍ରଦ୍ୱୟ ସାହାଯ୍ୟରେ ସର୍ବତ୍ୟାଗୀ ବୈରାଗୀ (Nonviolent Anarchist) ଅଜ୍ଞାନ, ଜଡ଼ତା ଓ ଶୈଶବର ସ୍ତରରେ ଥିବା ଜନସାଧାରଣଙ୍କୁ ଖୁଆଏ, ପିନ୍ଧାଏ ଓ ସ୍ୱାଚ୍ଛନ୍ଦ୍ୟ ଦାନକରେ, ଠିକ୍ ଯେପରି ନିରସ୍ତ୍ର ଜନନୀ ପରଦାର ଅନ୍ତରାଳରେ ଥାଇ ତାର ସଶସ୍ତ୍ର ସ୍ୱାମୀଙ୍କୁ ନିୟନ୍ତ୍ରିତ କରି ତାର ସନ୍ତାନମାନଙ୍କର ଆହାରାଦିର ବ୍ୟବସ୍ଥା କରାଇ ନିଏ ।

ଧନତୃଷ୍ଣାଗ୍ରସ୍ତ ପୁଞ୍ଜିପତିର ବା ବୈଶ୍ୟବୃତ୍ତି କେବଳ ତୁଚ୍ଛବସ୍ତୁକୁ ମୂଲ୍ୟବାନ ବସ୍ତୁରୂପେ ପରିଣତ କରିବାର ଶକ୍ତି ଥାଏ; ଠିକ୍ ଯେପରି ମହୁ ତିଆରି କରିବାର ଶକ୍ତି କେବଳ ମଧୁସଂଗ୍ରହକ ମହୁମାଛିର ହିଁ ଥାଏ । ମାତ୍ର ବୈଶ୍ୟଠାରେ ପିମ୍ପୁଡ଼ି ବା ମୂଷିକର ଆଚରଣ ପରି ପରସ୍ୱାପହାରକ ସଞ୍ଚୟପ୍ରବଣତା ରହିଥାଏ । ଧନ ଓ କ୍ଷମତାକୁ ଧୂଳିବତ୍ ତ୍ୟାଗ କରିଥିବା ସନ୍ନ୍ୟାସୀ କ୍ଷତ୍ରିୟରୂପୀ ଡ଼ିକ୍‌ଟେଟରର ସାହାଯ୍ୟରେ ପୁଞ୍ଜିପତିଙ୍କର ଏହି ପିମ୍ପୁଡ଼ି ଓ ମୂଷିକ-ସୁଲଭ ଅନାସ୍ଥା-କାରୀ ବୈଶ୍ୟବୃତ୍ତି ଓ ପରସ୍ୱାପହାରକ ଆଚରଣକୁ ସଂହାର କରେ ।

କ୍ଷତ୍ରିୟ ବା ଡ଼ିକ୍‌ଟେଟରର ବି କ୍ଷମତା ଅପବ୍ୟବହାର କରିବାର ଆଶଙ୍କା ଥାଏ । କ୍ଷତ୍ରିୟ ବା ଶାସକଗୋଷ୍ଠୀ ପାଖରେ ମଥା ନତ ନ କରିବାର ଶକ୍ତି ଅର୍ଜନ କରିଥିବା ଗିରିଗୁହାବାସୀ ଅବଧୂତ ସର୍ବସାଧାରଣଙ୍କର ମନରେ ଏକ ସୁଶୃଙ୍ଖଳ ରୂପାନ୍ତରିତ ବିଦ୍ରୋହମନୋବୃତ୍ତିକୁ (Sublimated anarchistic tendency) ଜାଗ୍ରତ କରି ରଖିଥାଏ ଏବଂ ଏପରି ଏକ ପରଂପରା (Tradition) ସୃଷ୍ଟି କରେ ଯେ ଯାହା ଫଳରେ କି କ୍ଷମତା ବଳରେ ବଳୀୟାନ୍ କ୍ଷତ୍ରିୟ ଧନ ପଛରେ ଧାଇଁ ନ ହୋଇ କେବଳ କ୍ଷମତାର ପରିସର ମଧ୍ୟରେ ସୀମାବଦ୍ଧ ରହେ ଏବଂ ଧନବଳରେ ବଳୀୟାନ ବୈଶ୍ୟ କ୍ଷମତାଲାଭରେ ଆଶା ନ ରଖି କେବଳ ଧନବୃଦ୍ଧିରେ ଲାଳସୀ ହୁଏ ।

ଯେଉଁ ସମାଜରେ ବୈରାଗ୍ୟ ବା ବୈରାଜ୍ୟର (Anarchism) ଭାବଧାରା ଯେତିକି ସତେଜ ଥାଏ, ସେଠାରେ ସାମାଜିକ ସମସ୍ୟା-ମାନ ଅପେକ୍ଷାକୃତ ଅଳ୍ପ ବାଧାବିଘ୍ନ ଓ ଅଳ୍ପ ରକ୍ତପାତରେ ସମାହିତ ହୋଇଯାଏ । ସମାଜରେ ମଧ୍ୟେ ମଧ୍ୟେ ଯେଉଁ ବୈଷମ୍ୟ ମୁଣ୍ଡ

ଥିବେ, ସେହି ବୈଷମ୍ୟମାନ ଅପେକ୍ଷାକୃତ ଅଳ୍ପ ଆୟାସରେ ନିରାକୃତ ହୋଇ ସାମ୍ୟ ସମ୍ପାଦିତ ହୁଏ ।

ଜାତିର ବାଳୁଆଦିଙ୍କୁ ଶିକ୍ଷା ଦେଲାବେଳେ ଦେଖିବାକୁ ହେବ, କେଉଁମାନଙ୍କଠାରେ ସଞ୍ଚୟତୃଷ୍ଣା (Possessing instinct) ପ୍ରବଳ ରହିଅଛି; କେଉଁମାନେ କ୍ଷମତା ତୃଷ୍ଣାର (Power instinct) ବିଶେଷ ଉପଯୋଗ କରି ପାରିବେ; କେଉଁମାନଙ୍କଠାରେ ଅସୀମ ଅନୁସନ୍ଧିତ୍ସା ଓ ବୈରାଗ୍ୟ ମନୋବୃତ୍ତିର (Rebel tendency) ତୀକ୍ଷ୍ଣତା ପ୍ରଚ୍ଛନ୍ନ ରହିଅଛି; କେଉଁମାନଙ୍କର ଏ ତିନୋଟି ପ୍ରବୃତ୍ତିର କିଛି ବିଶିଷ୍ଟତା ନ ଥାଇ କେବଳ ନିଦ୍ରାହାରବିହାରମୂଳକ ପ୍ରଚେଷ୍ଟା ଦେଖାଯାଉଛି । ଗୁରୁ ନିଜେ ଯଦି ବୈରାଗ୍ୟର ସ୍ତରରେ ରହିବେ ଏବଂ ଶିକ୍ଷାକ୍ଷେତ୍ରରୁ ଯଦି ସବୁପ୍ରକାର ସର୍କାରୀ ନିୟନ୍ତ୍ରଣ ଦୂର ହେବ, ତେବେ ଯାଇଁ ଏ ଗୁରୁଶ୍ରେଣୀର ଜାତି ବାଳୁଆଦିଙ୍କୁ ଠିକ୍ ଭାବରେ ବାଛିଯାଇ ସେମାନଙ୍କ ପ୍ରବୃତ୍ତିମୂଳକ ଆଚରଣକୁ ରୂପାନ୍ତରିତ କରାଯାଇ ସେମାନଙ୍କୁ ସମାଜର କଲ୍ୟାଣରେ ନିୟୋଜିତ କରାଯାଇ ପାରିବ ।

ବିନୀତ

ଲେଖକ

---

# ଧର୍ମରାଜ୍ୟ



## ପ୍ରଥମ ଅଧ୍ୟାୟ

### ବହିଃ ପ୍ରକୃତିକ ଜୟ କରିବାର ବୃଥା ଆତ୍ମଶ୍ଲାଘା

୧ । ପ୍ରଶ୍ନ—ଜଡ଼ବିଜ୍ଞାନ ମାନବକୁ କିପରି ଧ୍ୱଂସପଥର ଯାତ୍ରୀ କରୁଅଛି ?

ବ୍ରହ୍ମା ଯେ ବିଷ୍ଣୁ, ମହେଶ୍ୱର ମୁଲିଆ ପିଙ୍ଗୁ, ମେହେନ୍ତର
ଏ ତିନି ବେଶରେ ଦିନାଥେ ବସି ଅଛନ୍ତି ଗଙ୍ଗାଘାଟେ,
ବିଚାର କରୁଛନ୍ତି ରହି କିପରି ହିଂସା ହେବ ଲୋପ ।
ସତ୍ୟ ଧରମ ପ୍ରକାଶିବ ଜଡ଼ବାଦର ଧ୍ୱଂସ ହେବ ।

ସର୍କାର ସର୍ବଶକ୍ତିଶାଳୀ ନୋହି ରହିବ ସୀମା ଧରି,
ଶାସ୍ତି ସର୍ଜନା ବଣ୍ଟୁଅଛି ନେବ ନ ଜଣେ ଧନ ଭାରି ।
ଏ ଧନଂ ଭାରି ଧନ ଅଡ଼େ ବାଣ୍ଟି ହୋଇଲେ ସୂକ୍ଷ୍ମ ହବେ
ତେବେତି ଯାଇଁ ସାମ୍ୟଭାବ ସମାଜେ ହୋଇବ ସମ୍ଭବ ।
ଏମନ୍ତ ଭାବରେ ଜଗନ୍ନାଥେ ବସିଛନ୍ତି ଗମ୍ଭୀର ତଟେ,
ଏସନ ସମୟରେ ଦେବେ ବୃହସ୍ପତିଙ୍କି ଘେନ ସଙ୍ଗେ
* ଜଗନ୍ନାଥ ପାଶରେ ମିଳିଲେ ପ୍ରଣାମ କରଣ ଭାଷିଲେ ।

ବୃହସ୍ପତି ଉବାଚ

ଶୁଣ ହେ ପ୍ରଭୁ ଦାମୋଦର ଅବର ବ୍ରହ୍ମା ମହେଶ୍ୱର,
ଦେବତ୍ତ୍ୱବେଳ ଯେ ଦୈତ୍ୟକୁଳ ପ୍ରବଳ ହେଲେ ମହାବଳ ।
ଅଗ୍ନି ବାୟୁ ଯେ ଦିବାକର ଅସୁର ଭୁବନେ କିଙ୍କର ।
ସନ୍ଧ୍ୟା ହେଲାରୁ ଭୟେ ଅଗ୍ନି ହାଜର ହୁଏ ଯାଇ ବେଗି ।
ନଗର କାରଖାନାଘରେ ଅବର କୈଳାସ-ମନ୍ଦିରେ,
ଆପଣି ଥାଆନ୍ତି ବଜାରେ ଧନବନ୍ତଙ୍କ ଉଆସରେ,
ଯୋଗାଏ ବିଜୁଳିର ବତୀ ଅଗ୍ନି ଦେବତା ନିତପ୍ରତି ।
ରେଳର ଇଞ୍ଜିନ ପଞ୍ଜର ଅଗ୍ନି ଦେବଙ୍କୁ ତହିଁ ଭର,
ତାହାଙ୍କୁ କୋଇଲା ଖୁଆଇ ଗାଡ଼ିକି ନିଅନ୍ତି ଟାଣିଇ ।
ଗୁଡ଼କଳ-କଳ, ଲୁଗା-କଳ, ଲୁହାକାରଖାନା, ତେଲକଳ,
ଏ ଆଦ ଠାବେ ଅଗ୍ନିଦେବ ବନ୍ଦୀ ଅଛନ୍ତି ହେ ମାଧବ ।
ଯେ ଅଗ୍ନି ପାଉଥିଲ ନିତ ଲକ୍ଷେ ମହଣ ଘୃତାହୁତି,
ଆଜ ତା ଭାଗ୍ୟରେ କୋଇଲା, ଏହା କି ବିଧି ଲେଖିଥିଲା ?

* ଜଗନ୍ନାଥଙ୍କ ଆଗରେ ଦେବତାମାନଙ୍କ ଜଣାଣ ।

ଘୃତର ଗନ୍ଧ ଧୂମରାଶି    ଉଚ୍ଛୁଳୁ ଥିଲା ଦଶଦିଶି;
ସେ ଧୂମେ ଇନ୍ଦ୍ର ହୋଇ ତୁଷ୍ଟି    କରୁଣ ଥିଲା ମେଘବୃଷ୍ଟି ।
ଯଥା କେ ଆପଣାର ଲୋକ    ବାଟଦେଣେ ସ୍ମରଣ କଲେକ୍ଷ,
ହାତରେ ଧରିଲା ପଦାର୍ଥ    ଖସି ପଡ଼ଇ ଅକସ୍ମାତ,
ତଥା ଏ ଘୃତର ଅହୁତ    ଝେଲାଉ ଥିଲା ବାଶ୍ମମତ ।
ଅଜ ଅଙ୍ଗାରଧୂଆଁ ଉଠି    ନଗ୍ର ଆକାଶେ ଯାଏ କ୍ଷେପି ।
ବାୟୁଦେବଙ୍କ ଶ୍ୱାସ ରୋଧି    ଅନେକ ଉପୁଜାଏ ବ୍ୟାଧି ।
ନ ଦେଇ ଭୁଞ୍ଜିବାକୁ କନ୍ତୁ    ଅଗ୍ନିଦେବଙ୍କୁ ପୀଡ଼ା ଦ୍ୟନ୍ତ;
ମଟର ଉଡ଼ା ଜାହାଜରେ    ବନ୍ଦୀ କରଣ ଗବଂଭରେ
ପେଟ୍ରୋଲ ଢୋକେ ଢୋକେ ପେଇ    ବୋଲନ୍ତି ବେଗେ ଚଲା ତୁହି;
ଉଚ୍ଛୁର ହୋଇଲେଣି ଜାଣ    ଭଣ୍ଡୁର ହେବ ଆମ କାମ ।
* ବାହାର ରଖନ୍ତି ଉଜ୍ଜ୍ୱଳ    ଭିତର ଘୋର ଅନ୍ଧକାର ।
କାମ କ୍ରୋଧାଦି ନିଶାଚର    ହୃଦ କରନ୍ତି ନାରଖାର ।
ଅଗ୍ନିଦେବଙ୍କୁ ପିଣ୍ଡ ନଡ    ପୀଡ଼ା ଦେଲେକ ଦିନରାତ ।
ସଭିଙ୍କ ଦୃଷ୍ଟିଶକ୍ତି ସେଣୁ    କ୍ଷୀଣ ହୋଇଲା ଦିନୁଦିନୁ ।
ସଭିଙ୍କି ଦିଶିଲା ଝାପସା    ବାକ୍ସତେ ଲଭିଲେ ଗ୍ଳାନିଶା,
ଚଷମା ପିନ୍ଧିଲେ ଯୁବକ    ଅନ୍ଧାରକଣା ହେଲେ ଲୋକ ।
ମଣି ରହିଣ ନିଜ ଭୋଗେ    ଦେବଙ୍କୁ ପୀଡ଼ନ୍ତି ଦାନବେ ।
ଭିତର କଥା ନ ଚିନ୍ତନ୍ତି    ବାହାର ସଫାଇ କରନ୍ତି ।
ଭିତରେ ବିଷ୍ଠା ମୂତ୍ର କୃମି    ଏମାନ ରହିଅଛି କମି
ଏକଥା ଭୁଲିଣ ମାନବ    ମଣେ ନିଜକୁ କାମଦେବ ।

× × ×

---

* ଅନ୍ତଃ ପ୍ରକୃତିକୁ ଜୟ କରିବାହିଁ ମନୁଷ୍ୟତା ।




[ଯେ ଅଗ୍ନି ପାଉଥିଲ ନିତ, ଲକ୍ଷେ ମହଣ ଘୃତାହୁତି,
ଆଜି ତା ବ୍ରଘ୍ୟରେ କୋଇଲ, ଏହା କି ବିଧି ଲେଖିଥିଲ ।]

ପୃ—୨

ବାୟୁ ଦେବତା ପେଟ ଚିରି ଦେଖନ୍ତି ଅଛି କିସ ଭରି,
ବୋଲନ୍ତି ଅହଂକାରମଦେ ଜାଣି ପାରିଛୁ ଆମେ ସର୍ବେ;
ଅଙ୍ଗାରକାମ୍ଳ ଅମ୍ଳଯାନ ବାଷ୍ପରେ ଗଢ଼ା ବାୟୁ ଜାଣ ।
ବାହାର କଥାରେ ନ ଭଲ ନିଜର ଅନ୍ତରକୁ ଚିର
କିସ ତା ଭିତରେ ଅଛଇ ଦେଖିବା ଉଚିତ ଅଟଇ ।
କେ ସର୍ବହରା ଶ୍ରମଜୀବୀ ଖିଦ୍ୟତରରେ ଯା'ନ୍ତି ସିଝି ।
ମୁଣ୍ଡ ଝାଳକୁ ତୁଣ୍ଡେ ମାରି ଶସ୍ୟ ବୁଣନ୍ତି ହଳ କରି ।
ସନ୍ଧ୍ୟାରେ ସେରେ ମାଣେ ମୂଲ ନେଇ କାଟନ୍ତି ଦିନକାଳ ।
*ବାବୁଏ ଚଉକରେ ବସି ଘଣ୍ଟାଏ କଲମକୁ ଚପି ।

* ବାବୁ ଓ ମୂଲିଆଙ୍କ ଭିତରେ ପ୍ରଭେଦ ।

ଥକି ପଡ଼ନ୍ତି ଶ୍ରମହାଲେ    କଲମ ଆଉ ଯେ ନ ଚଳେ ।
ବିଜୁଳିପଙ୍ଖା ଖୋଲିଦେଇ    ବାୟୁକୁ ରଖନ୍ତି ଖଟାଇ ।
ବାୟୁଦେବଙ୍କୁ ଦେଇ ଦୁଃଖ    ମନେ ବହନ୍ତି ଆତ୍ମସୁଖ ।
ଦେହ ଥଣ୍ଡାରେ ମନ ଦ୍ୟନ୍ତି    ଚିତ୍ତକୁ ଗରମ ରଖନ୍ତି ।
କାମ କ୍ରୋଧର ତାପ ଏଡ଼ି    ନିଜ ହୃଦକୁ ଥଣ୍ଡା କରି,
ପଛରେ ଦେହକୁ ଶୀତଳ    ରଖିବା ବିନା ଅଟେ ସାର ।
ବାବୁଏ ଏହା ଭୁଲିଗଲେ    ବାହାର କଥାକୁ ଦେଖିଲେ ।
ବୋଲନ୍ତି କରି ଅହଂକାର    ମୂଲିଆଠାରୁ ଆମେ ବଡ଼ ।
ରାଜ ହାକିମମାନ    ବୁଝଇ ଆମର କଲମ ।
ଆମେ ଯେ ମଥାଶ୍ରମ କରି    ଅଇନ କରୁଅଛୁ ଜାରି,
କୁଲି ମୂଲିଆ ବୋହି ଭାର    ଖରାରେ ଅବା କରି ହଳ,
ଆମର ସଙ୍ଗତରେ କେବେ    ସମକକ୍ଷ ଯେ ନ ହୋଇବେ ।
ଶଏ ଘଣ୍ଟାର ହଳକାମ    ଅଥବା କ୍ଷେତେ ବେଉଷଣି,
ମୁହୂର୍ତ୍ତକର ମଥାଶ୍ରମ —    ସଙ୍ଗତେ ହେବ ନାହିଁ ସମ ।
ସହସ୍ର ମୁଦ୍ରା ବ୍ୟୟ କରି    ସ୍କୁଲ କଲେଜେ ପାଠ ପଢି ।
* ମଥା କର୍ଷଣ କରିଅଛୁ    ବାବୁ ପଦବୀ ପାଇଅଛୁ ।
ଖରାତକରେ ନୋହି ଦହି    ଆରାମେ କୋଠାଘରେ ରହି,
ମାସକୁ ଟଙ୍କା ଶତ ଶତ    ନେବାକୁ ପଢ଼ିଅଛୁ ପାଠ ।
କେମନ୍ତେ ଭାର ନ କାନ୍ଧେଇ    ମୁଣ୍ଡରେ ବୋଝକୁ ନ ବୋହି
ନିଜେ ଶ୍ରମକୁ ଘୃଣା କରି    କୁଲିଙ୍କି ଖଟାଇବା ମାରି,
ଏଥିପାଇଁ ମୁଁ ପାଠ ପଢି    କରୁଛି ଆଜ ବାବୁଗିରି ।
ମୁଁ ପାଠ ପଢିଅଛି ବୋଲି    କାଣି ପାରୁଛି ଜମିବାଡ଼ି ।

* ବାବୁମାନଙ୍କର ଅଭିସନ୍ଧି ।

ତୋଳି ପାରୁଛୁ କୋଠାଘର | ନାଡ ଖାଇଛୁ ମାଛଝୋଳ ।
କୁଲି ମୂଲିଆ ମୂର୍ଖ ଯେଣୁ | ବହୁତ ଖଟନ୍ତି ସେ ତେଣୁ ।
ଖରାବର୍ଷାରେ ଦଗ୍ଧ ହୋଇ | ହଳ କରନ୍ତି କ୍ଷେତେ ଯାଇଁ ।
ମୂଲି ମଜୁରି ଲଭି ନାଡ | କଷ୍ଟରେ ପେଟକୁ ପୋଷନ୍ତି ।

× × ×

କର୍ମ କୌଶଳ ଯେ ଜାଣଇ | ସେ ଜନ ପଣ୍ଡିତ ବୋଲାଇ ।
ଶରୀର ଶ୍ରମ ଯଥାକାମ | ଦୁଇ କାର୍ଯ୍ୟେ ସେ ସୁନିପୁଣ ।
ମୂର୍ଖ ନ ଜାଣେ ଯଥାଗୁଣ | କେବଳ କରେ ଦେହଶ୍ରମ ।
ଉଭୟ ଶ୍ରମ ଯେହୁ କରେ | ସେ ଉଚ୍ଚାସନେ ବସିପାରେ ।
ଯେ ପଢିଥାଏ ଖାଣ୍ଟି ପାଠ | କଲମ କୋଡ଼ ଯା ଅଯତ୍ନ ।
ମୁଣ୍ଡେଇବାରେ ଲାଜ ଛାଡ଼ | ଯେ ମୁଣ୍ଡକାମ ଯାଏ କରି ।
୧ ହାକିମ ପଣକୁ ଭଜନ | ସେହି ପଣ୍ଡିତ ଏକା ଜାଣ ।

× × ×

ଗ୍ରାମର ପଡ଼ିଆ ପ୍ରାନ୍ତର | ତୃଣର ଭୂମି ଯେ ଗୋଚର ।
ଟାଁ ପୋଖରୀ ଆଉ ଭୂଇଁ | ପୁରୀଷ ତେଜ ଯହିଁ ତହିଁ ।
ଗାଁଅର ପାଣି ଯେ ପବନ | ଦୂଷିତ କଲେ ମୂଢଜଣେ ।
ଚଣ୍ଡୀ ଗୁମୁଣ୍ଡୀ ବାସୁଳାଇ | ଖାଙ୍କାଳୀ ବୁଢ଼ୀ ଜାଗୁଳାଇ
ଏରୂପେ ଗ୍ରାମର ଦେବତା | ଜଗଜ୍ଜନନୀ ପଡ଼ିଛନ୍ତି ।
ପଥର ରୂପେ ମହାମାଈ ୨ | ପଡ଼ି ଅଛନ୍ତି ଯହିଁ ତହିଁ ।

---

୧ ପ୍ରକୃତ ବାବୁ ସେହି ହୋଇପାରେ, ଯେ କଲମ ଓ କୋଡ଼ ଦୁହିଁଙ୍କି ଅଯତ୍ନ କରିପାରେ ।

୨ ଗ୍ରାମଦେବତାମାନଙ୍କ କଳ୍ପନା ପଛରେ ଗ୍ରାମର ଜଳବାୟୁକୁ ସ୍ୱଚ୍ଛ ରଖିବାର ସତ୍ୟ ନିହିତ ଅଛି ।

ଶ୍ୱାନ ଶୃଗାଳ ପରି ମୂଢ଼େ
ମାଆଙ୍କୁ ହତାଦର କଲେ ।

ମଳ ମୂତ୍ରାଦି ସହିଁ ତହିଁ
ତେଜିଲେ ଲାଜ ଛାଡ଼ିଦେଇ ।

ଏରୂପେ ଗ୍ରାମର ଦେବତା
ପୂତ ଗନ୍ଧରେ ସତୁଛନ୍ତି ।

ଏ କାଳରୂପୀ ମହାମାଈ
ହୋଇଣ ବୁଢ଼ୀ ଗୁଆଖାଈ ।

ମୂଢ଼ଙ୍କୁ କରିଲେ ସଂହାର
ଉଶ୍ୱାସ ହେବ ମହୀଭାର ।

ବୃହସ୍ପତି ଯେ ବନସ୍ତରେ
ଭାଷନ୍ତି ବିନାଥ ସମ୍ମୁରେ

ଶୁଣି ହେ ପ୍ରଭୁ ଦାମୋଦର
ଆବର ବନ୍ଧୁ ମହେଶ୍ୱର ।

ବେଜୁ ବେଲ ଯେ ପରବଳ
ହୋଇଲେ ମହୀତର ଅସୁର,

ମାଟି ପଥରେ ଦିଅ ଗଢ଼ି
ପଞ୍ଚୋପଚାରେ ପୂଜା କରି

ସକଳ ଘଟେ ନାରାୟଣ
ଏହା କରିଲେ ବିସ୍ମରଣ ।

କାଠ ଦିଅଙ୍କୁ ପୂଜା କଲେ
ଜୀବନ୍ତ ଦିଅଙ୍କୁ ଭୁଲିଲେ ।

ଅର୍ଦ୍ଧଉଲଗ୍ନ ଅର୍ଦ୍ଧାହାରୀ
ସର୍ବହରା ଯେ ନରନାରୀ

ଏମାନଙ୍କର ପ୍ରତିମୂର୍ତ୍ତି
ମାଟି ପାଷାଣ ଦିଅ ମୂର୍ତ୍ତି ।

ଏହାକୁ ମାନବ ଭୁଲିଲ
ପିତୁଳା ପୂଜା ସାର ହେଲ ।

* ମାଟି ଦିଅଙ୍କୁ ଯେ ପୂଜିବ
ଦୁଇଟି କଥା ସମଝିବ;

କ୍ଷଣଭଙ୍ଗୁର କଳେବର
ମାଟିରେ ଗଢ଼ା ଏ ଶରୀର ।

ତନ୍ମ ଧନର କାରବାର
ମରିଲେ ଭାଙ୍ଗଇ ଶରୀର ।

ଏ ମାଟି ଦେହର ଭିତରେ
ଚିଦ୍‌ଘନ ଆତ୍ମା ବାସକରେ ।

ଆତ୍ମାର ଜନ୍ମ ମୃତ୍ୟୁ ନାହିଁ
ସକଳ ଘଟେ ବିରାଜଇ ।

ଦେହ ଆତ୍ମାର ଭେଦଭାବ
ଜାଣଇ ଯେ ଜ୍ଞାନୀ ମାନବ,

ସେ ମାଟିଦିଅ ପୂଜା କରି
ଆତ୍ମାର ତଥ୍ୟ ପାରେ କଳି ।

ସମ୍ପଦ ସୁତ ଦାରା ଘର
ନ କହେ ସେହୁ ମୋର ମୋର ।

* ମୂର୍ତ୍ତି ପୂଜା ପଛରେ ଦୁଇଟି ସତ୍ୟ ନିହିତ ଅଛି ।

ମାନବେ ଏହା ଭୁଲିଗଲେ — ଅସତ୍ୟ ହିଂସାରେ ମଜ୍ଜିଲେ ।
ଜୀବନ୍ତ ଦେଶଙ୍କ ଆହାର — ଛଡ଼ାଇ କଲେ ମୋର ମୋର ।
ମାଟିଦେଶଙ୍କୁ ଦେଇ ଭୋଗ — ଦେଖାନ୍ତି କେତେ ଯେ ଭଡ଼ଙ୍ଗ ।
ଯେଣୁ ଏ ମୂଢ଼େ ଜାଣିଛନ୍ତି — ଦେଶଙ୍କ ନାହିଁ କହିମତି ।
ଯଦି ଏ ମାଟିର ଦେବତା — ହାତ ବଢ଼ାଇ ଖାଉଥାନ୍ତା,
ତେବେ ଷୋଡ଼ଶ ଉପଚ୍ଚରେ — ପୂଜା କି କରନ୍ତେ ଅସୁରେ ?
ଚତ୍ତର ଦମ୍ଭ ଅହଂକାର — ଅଟଇ ମୂଢ଼ ଯେ ଛାଗଳ ।
ମୂଢ଼ ଦୈତ୍ୟ ଏ ଅହଂକାର — ଏହା ସମଷ୍ଟି ଜ୍ଞାନୀନର,
ମହାମାଈ ଯେ ମହାକାଳୀ — ତା ଆଗେ ଯାଙ୍କୁ ଦ୍ୟନ୍ତି ବଳି ।
ଅସୁରେ ଏ କଥା ଭୁଲିଲେ — ମାଂସ ଭୁଞ୍ଜିବା ସାର କଲେ ।
ନର ପିଶାଚ ବେଶ ଧରି — ନିରୀହ ପଶୁବଧ କରି
ଦେବୀ ଆଗରେ ବୋଦାବଳି — ଦେବାର ବାହାନା ଯେ କରି
୧ ଛାଗଳ ମୁଣ୍ଡ ଛାଗକୋଷ — ଏଥେଁ ରଖିଲେ ଅଭିଳାଷ ।

× × ×

ସୂର୍ଯ୍ୟଦେବଙ୍କୁ ପୀଡ଼ା ଦେଇ — ରଞ୍ଜନ ରଶ୍ମିଙ୍କ ଛଡ଼ାଇ
ଯୋଗୀଶରୀର. ପରଖନ୍ତି — ହରଡ଼ ଘଣାରେ ପେଡ଼ନ୍ତି ।
ବୋଲନ୍ତି ବଡ଼ ଆବିଷ୍କାର — ହୋଇଲୁ ଆଜି ତ ଅମର ।
ଅଜିଠାରୁ ଯେ ପୀଡ଼ା ସବୁ — କରିଣ ଦେବୁଁ ଆମେ କାବୁ ।
ଉଦ୍‌ଭାବନ୍ତି ଯେ ବଡ଼ ବଡ଼ — ନିତ୍ୟ ନୂତନ ଆବିଷ୍କାର
କଲଣି ଏ ମାନବ ଜାତି — ୨ଜଡ଼-ବିଜ୍ଞାନ ବଳେ ମାତି ।

---

୧ ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ମାଂସ ଲୋଭରେ ଛାଗବଳି ଦେବା ପରିବର୍ତ୍ତେ ନିଜର ଅହଂକାରକୁ ବଳିଦେବା ବାଞ୍ଛନୀୟ ।

୨ ଜଡ଼ବିଜ୍ଞାନର ଚରମ ଉନ୍ନତି ସତ୍ତ୍ୱେ ସଭ୍ୟ ଜାତିମାନେ ଅଧିକତର ଭାବରେ ବିତାପଜଡ଼ିତ, ଅଥଚ ଅସଭ୍ୟ ଆଦିବାସୀମାନେ ଅପେକ୍ଷାକୃତ ସୁଖୀ ।

ହୋଇଛୁ ଏକ ଉଦ୍ଭାବନ    ବୃଦ୍ଧ ଯେ ହୋଇବ ତରୁଣ
ପାକଲା ବାଳ କଳା ହେବ    ନୂତନ ଦାନ୍ତ ଜନ୍ମିବ ।
ଲଙ୍କାର ରାଜା ଯେ ରାବଣ    କରିଥିଲାକ ଉଦ୍ଭାବନ,
ଶତ ଯୁବତୀ ସଙ୍ଗେ ରତ    କରିଲେ ଯିବ ନାହିଁ ହତି ।
ରାବଣାସୁର ଶେଷେ ମଲା    ସୋଣ୍ଢା ପାଉଁଶ ଲଙ୍କା ହେଲା ।
ତା ଉଦ୍‌ଭାବନ କେଉଣେ ଗଲା    ସ୍ୱର୍ଗସିଡ଼ି ତା ଭାଙ୍ଗିଗଲା ।
ସେସନେ ଆଜ ଉଦ୍ଭାବନ    ନୂତନ ଆବିଷ୍କାର ମାନ
ସରବେ ହୁଅନ୍ତି ବ୍ୟର୍ଥ    ମାନବ ନିତି ତାପେ ତାପିତ ।
ଶରୀର ବ୍ୟାଧିର ମନ୍ଦିର    ଦୁଃଖ ଶୋକର ଗନ୍ତାଘର ।
ଏତେ ଔଷଧ ଡାକ୍ତର    ଏତେ ବିଜ୍ଞାନ ଆବିଷ୍କାର,
ତଥାପି ନାନା ରୋଗ ଶୋକେ    ମାନବ ଡାହି ଡାହି ଡାକେ ।
କେ ଖାଇବାରେ ହୋଇ ବାଇ    ଉଦର ରୋଗରେ ମରଇ ।
କେ ଖାଇବାକୁ ପାଏ ନାହିଁ    ବାଧ୍ୟରେ ଅଖାଦ୍ୟ ଭୁଞ୍ଜଇ ।
ଏଣୁ କଙ୍କାଳ ସାର ହୋଇ    ଗ୍ରହଣୀ ରୋଗରେ ମରଇ ।
କେ ଯାଇ ବାରାଙ୍ଗନା ଘରେ    କୁଷ୍ଠ ପ୍ରମେହ ରୋଗେ ସଢ଼େ ।
କେ ଜପି ସଦା ମୋର ମୋର    ପାଗଳ ହୋଇ କାଟେ କାଳ,
ମାଲ ମାମଲା ମକଦ୍ଦମା    ଏଥେଁ ଲୋକଙ୍କୁ ନାନାଖାନା
କରି ନିଜକୁ ଉଜୁଡ଼ାଏ    ଆନଙ୍କୁ ଉଚ୍ଛନ୍ନ କରାଏ ।
ଶରୀରେ ଅନେଶତ ରୋଗ    ଇନ୍ଦ୍ରିୟ ସେବାରୁ ସମ୍ଭବ ।
ଖାଣ୍ଟି ବଇଦ ଅଛି ସେହୁ    ସଂଯମ ଶିକ୍ଷା ଦିଏ ଯେହୁ ।
ଭିତର ରୋଗକୁ ନ କାଢି    ବାହାରେ ପକାନ୍ତି ଯେ ଢାଳି ।
ଡାକ୍ତର ହୋଇ ଖଣ୍ଡବୁଦ୍ଧି    କରି ସେ ରୋଗୀଙ୍କି ମାରନ୍ତି ।

ଇତି ଶ୍ରୀ ଧର୍ମରାଜ୍ୟେ ଦ୍ୱିତୀୟ ଖଣ୍ଡେ ବୃହସ୍ପତି ଜଣାଣେ ବାହ୍ୟ ପ୍ରକୃତିକି ଜୟ କରିବାର ବୃଥା ଆତ୍ମଶ୍ଲାଘା ବର୍ଣ୍ଣନ ନାମ ପ୍ରଥମ ଅଧ୍ୟାୟ ।

—**—

# ଦ୍ୱିତୀୟ ଅଧ୍ୟାୟ

## କାମିନୀ-କାଞ୍ଚନର ପିଶାଚୀ ନିଶା

ଏ ପ୍ରଶ୍ନ— ମଣିଷ କେବଳ ବାହାରମୁହାଁ ହେବା ଫଳରେ ଅସତ୍ୟ ଓ ହିଂସାରେ କପଟ ଘାରି ହେଉଛି ?

### ବୃହସ୍ପତି ଉବାଚ

ବୃହସ୍ପତି ଯେ ବିନୟରେ    ଭାଷନ୍ତି ହି ନାଥ ଛାମୁରେ ।
ଶୁଣ ହେ ପ୍ରଭୁ ଦାମୋଦର    ଅବର ବ୍ରହ୍ମା ମହେଶ୍ୱର,
ମାନବେ ଅସୁରର ରୀତି    ଧରି ହୁଡ଼ିଲେ ନିଜ ମତି ।
ଉପରମୁହାଁ ରୀତି ଧରି    ଧରାକୁ ସର୍ବ ଜ୍ଞାନ କରି,
ଦେବଙ୍କୁ ନାନା ପୀଡ଼ା ଦେଇ    ଜଡ଼-ବିଜ୍ଞାନେ ହେଲେ ବାଇ ।
ନଦୀରେ ବାନ୍ଧ ଅନିକଟ    ଗଙ୍ଗାକୁ କରନ୍ତି ଅକଟ ।
ବୋଲନ୍ତି ଏବେ ବଢି ବୁଢ଼ୀ    ଦେଶରୁ ଦେବୁ ଆମେ ତଡ଼ି ।
ବିଜୁଳି ଶକ୍ତିର ପ୍ରତାପେ    ପ୍ରଜା ଭାସିବେ ସୁଖସ୍ରୋତେ ।
ସୁନା ଫଳିବ ଦେଶସାରା    ଧନଧାନ୍ୟ ଯେ ହେବ ଭରା ।
ବିଜୁଳିବତୀ ଗ୍ରାମେ ଗ୍ରାମେ    ରେଡ଼ିଓ ଖଞ୍ଜିଦେବୁ ଆମେ ।
ଲୋକେ ରହିବେ ସୁଖେ ମାତି    ନ ଯିବ ଜଣା ଦିନରାତି ।
ଗ୍ରାମେ ଗ୍ରାମେ ଯେ ପକ୍‌କା କୋଠା    ତିଆରି ହେବ ପକ୍‌କା ରାସ୍ତା ।
ନଗର ଗ୍ରାମର ତଫାତ    କରିଣ ଦେବୁ ଆମ୍ଭେ ଲୋପ ।
ନଗର ପରି ହେବ ଗ୍ରାମ    ଐଶ୍ୱର୍ଯ୍ୟଶାଳୀ ଶୋଭାବାନ ।
ଶୀତ ଗ୍ରୀଷ୍ମର କଷ୍ଟମତ    ଲୋପ କରିବ ବିଦ୍ୟୁଶକ୍ତି ।

୧ ଚିର ବସନ୍ତ ପ୍ରକଟିବ ଧରଣୀ ସ୍ୱର୍ଗପୁର ହେବ ।
ଏମନ୍ତେ ଲଙ୍କାର ରାବଣ ଦେଖାଇଥିଲା କେତେ ପଣ ।
ଦେବତାମାନଙ୍କୁ ସେ ଧରି ରଖିଣ ଥିଲା ଦାସ କରି ।
ଏ ଚିତ୍ତ ଭିତରେ ଅସୁର କାମକ୍ରୋଧାଦି ନିଶାଚର;
ଏହାଙ୍କୁ କରିବା ସଂହାର ଜୀବନେ ସିନା ଅଟେ ସାର ।
ଏହା ଯେ ଭୁଲିଲା ରାବଣ ଧରିଲା ଅସୁରର ଗୁଣ ।
ଭୋଗ-ବିଳାସେ ମତ୍ତ ଛନ୍ଦା ସଂଯମ କଲା ବିସର୍ଜନ ।
ପର ରମଣୀ ପର ଧନ ଏଥେ ଯେ ବଳାଇଲା ମନ ।
ଶୀତୋଷ୍ଣ ସୁଖ ଦୁଃଖେ ପଡ଼ି ମାନାପମାନେ ହୋଇ ଘାରି ।
ଚିର ବସନ୍ତ ସ୍ଥାପି ଥିଲା ତ୍ରିପୁରଜୟୀ ସେ ହୋଇଲା ।
ତ୍ରିପୁରଯାକର ସୁନ୍ଦରୀ ସଭିଙ୍କୁ ବଳାତ୍କାରେ ଧରି,
ବିଶ୍ୱ ରସିକ ହେବାପାଇଁ ମନ ବଳାଇ ଥିଲା ସେହୁ ।
ସମ୍ପଦେ ଦେଖାଇ ଗୁମର ଲଙ୍କାକୁ କଲା ସ୍ୱର୍ଣ୍ଣପୁର ।
ଏଣୁ ବିପଦେ ହୋଇ ମୂଢ଼ ସବଂଶେ ମରିଲା ଅସୁର ।
ସୁନାର ଲଙ୍କା ଗଲା ପୋଡ଼ି ଚିରବସନ୍ତ କଲା ଛାଡ଼ି ।
ଏଣୁ ସଂଯମପଥେ ରହି ଭୋଗ ବିଳାସେ ନୋହି ବାଇ,
ମାନାପମାନ ନିନ୍ଦା ସ୍ତୁତି ଏଥେ ରଖିଣ ସମଦୃଷ୍ଟି ।
ଶୀତୋଷ୍ଣ ସୁଖ ଦୁଃଖ ସହି ପାରେ ଯେ ମଣିଷଟି ସେହି ।
କରିଲେ ଇନ୍ଦ୍ରିୟ ନିରୋଧ ପହିଲେ ଘଟେ ଦୁଃଖ ବୋଧ ।
୨ ଏ ଦୁଃଖ ବୋଧ ଯେହୁ ସହେ ସେ ଜାଣ ଚିରସୁଖ ପାଏ ।

---

୧ ବାହାର ପ୍ରକୃତିକୁ ଜୟ କରି ସୁଖ ପାଇବାର ବୃଥା ପ୍ରୟାସ ଛାଡ଼ିବା ଉଚିତ ।

୨ ଦ୍ୱନ୍ଦ୍ୱମୁକ୍ତ ହୋଇ ନିରବଚ୍ଛିନ୍ନ ସୁଖ ପାଇବାହିଁ ପ୍ରକୃତ କର୍ମ-କୌଶଳ ।




[ଯେ ଯେତେ ହୁଏ ଗ୍ରୀଷ୍ମଦ୍ୱେଷୀ, ଶୀତେ ଭୟ ତା ସେତେ ବେଶୀ
ଗ୍ରୀଷ୍ମେ ବିଜୁଳି ପଙ୍ଖାତଳେ, କଲମ ଧରି ହାଇ ମାରେ ।]

ପୃ—୧୨

ଯହିଁ ଇନ୍ଦ୍ରିୟ ସୁଖ ମିଳେ ତାହାକୁ ଖୋଜିଇ ଯେ ହେଲେ,
ଇନ୍ଦ୍ରିୟେ ଯାହା ନ ରୁଚଇ ଭୟେ ତାହାକୁ ଯେ ତେଜଇ,
ସେ ସୁଖ ପାଏ ନାହିଁ ଲେଶ ସଂଯମକୁ ସେ ମଣେ ବିଷ ।
ଯେ ଯେତେ ହୁଏ ଗ୍ରୀଷ୍ମଦ୍ୱେଷୀ ଶୀତେ ଭୟ ତା ତେତେ ବେଶୀ ।
ଗ୍ରୀଷ୍ମେ ବିଜୁଳି ପଙ୍ଖାତଳେ କଲମ ଧରି ହାଇମାରେ ।
ଶୀତେ କମ୍ବଳ ଘୋଡ଼ି ହୁଏ ପହଡ଼େ ବେଳଯାକ ସୁଏ ।
ମୂଲପାଇ ଯେ ଲାଗି ନିତି ଶ୍ରମ କରିଣ ଖାଏ ଖଟି ।
ଲଙ୍ଗଳ ମୁଠି ଧରି କରେ ପ୍ରଚଣ୍ଡ ରୌଦ୍ରେ ହଳ କରେ,
ଘୁର୍ମେ ଝଡ଼ ବରଷାରେ ପଖିଆ ମୁଣ୍ଡେ ବାଛେ ବିଲେ ।

ପ୍ରଖର ଶୀତପ୍ରାତେ ଉଠେ ଦାଆ ଧରି ସେ ଧାନ କାଟେ
ଗ୍ରାମେ ବ୍ୟାପିଲେ ବିଦ୍ୟୁଶକ୍ତି ଖରାରେ ହଳ ନ ହେବ କି ?
* ଝଡ଼ ବର୍ଷାରେ ବିଲବନ୍ଧ ଶୀତ ସକାଳେ ଧାନକଟା'
ଏ ସବୁ ବଦଳି କେ ଦବ ଚିରବସନ୍ତ ପ୍ରକାଶିବ ?
ଅସଲ ଖଟଣି ଯେ କରେ, ଭାତ ଲୁଗା ଯେ ସୃଷ୍ଟି କରେ,
ଖରା ବରଷା ଶୀତ ସହି ଲେଙ୍ଗୁଟି ଖଣ୍ଡେ ମାରିଦେଇ,
କାନ୍ଧ ମଥାରେ ବୋଝ ଲଦେ କୋଦାଳ ଧରି ମାଟି ତାଡ଼େ
ତାକୁ ବିଜୁଳି ପଙ୍ଖା ସୁଖ ଦବାକୁ ଗୁହାଁବ କେ ମୂର୍ଖ ?
ମୁଣ୍ଡରେ ବୋଝ ବହିନେଇ ଅଥବା ଭାରକୁ କାନ୍ଧେଇ
ବାଟରେ ଯେବେ ଯାଉଥିବ, କେ ତାକୁ ପଙ୍ଖାରେ ବିଞ୍ଚିବ ?
କେଉଁ ବିଜ୍ଞାନ କରିମତ ତା ଦେହୁ ଝାଳ ଦେବ ରୋକି,
କେଉଁ ସର୍କାର ବାଇ ହୋଇ କ୍ଷେତରେ ଗୁନ୍ଦୁଆ ଟଙ୍ଗାଇ
ବିଜୁଳି ପଙ୍ଖା ଦେଇ ଖଞ୍ଜି କହିବ ପ୍ରଜାମନ ରଞ୍ଜି,
ଏବେ ଶ୍ରମିକେ ବୋଲ କର ନିର୍ଭୟେ ଯାଇ ଚାଷ କର ।
ଖରା ବରଷା ଦୁଃଖ କ୍ଳେଶ ତୁମକୁ ହେବ ନାହିଁ ଲେଶ ।
ଯେମନ୍ତେ କାରଖାନାଘରେ ଶ୍ରମିକେ ଛନ୍ତି ସୁବିଧାରେ
ସେ ସୁଖ ଲଭ ତୁମେମାନେ ହେ ଖେତ ମଜୁରିଆମାନେ ।
ବିଜ୍ଞାନ ଗର୍ବେ କେ ସର୍କାର ହୋଇବ ଏମନ୍ତେ ପାଗଳ ?
ଖରା ବରଷା ଶୀତକଷ୍ଟ ବାଧ୍ୟରେ ସହଇ ଶ୍ରମିକ ।
ଖରା ବରଷା ଶୀତ ଏଡ଼ି କେ ପାରେ ଅନ୍ନ ସୃଷ୍ଟି କରି ?
ମୂର୍ଖ ଶ୍ରମିକ ଦୁଃଖ କଷ୍ଟ ଦେଖିଣ ଭାବିବ ଜ୍ଞାନବନ୍ତ ।

---

* ଖରା, ବର୍ଷା ଓ ଶୀତ ସହି ବିଲରେ ଖଟୁଥିବା ଶ୍ରମିକକୁ ବିଜ୍ଞାନ କଦାପି ଖରା, ବର୍ଷା, ଶୀତ କଷ୍ଟରୁ ଉଦ୍ଧାର କରିପାରିବ ନାହିଁ ।



[ମୂଲପାତ ଯେ ଲଗି ନତ,
ଶ୍ରମ କରଣ ଖାଏ ଖଟି ।
ଲଙ୍ଗଳ ମୁଠି ଧରି କରେ,
ପ୍ରଚଣ୍ଡ ରୌଦ୍ରେ ହଳ କରେ ।
ଘାମେ ବ୍ୟାପିଲେ ବନ୍ଦ୍ୟଶକ୍ତି
ଖରାରେ ହଳ ନ ହେବ କି ?]

ପୃ—୧୩

ଶ୍ରମିକମାନେ ବାଧ୍ୟ ହୋଇ
ଶୀତ ଗ୍ରୀଷ୍ମ ଛନ୍ତି ସହି ।
ବାଧ୍ୟରେ ନିନ୍ଦା ଗାଳିମାନ
ସହୁଛନ୍ତି ଏ ଦୁଃଖୀଜନ ।
ଖାଇବା ପିନ୍ଧିବା ବାହାନେ
ଲଙ୍ଗଳା ଭୋକିଲା ଏମାନେ,
ପଣ୍ଡିତଜନ ଏହା ଭାବି
ଭୋଗ୍ୟବସ୍ତୁକୁ ଦିଏ ଠେଲି ।
ସ୍ୱେଚ୍ଛାରେ ସହିଇ କଷଣ
ଅନନ୍ଦେ ଅଭ୍ୟାସି ସଂଯମ,
ଶୀତ ଗ୍ରୀଷ୍ମ ତାପ ସହି
ଶରୀର ଶ୍ରମ କରେ ଯାଇ,
ନିନ୍ଦା ପ୍ରଶଂସା ଗାଳି ଶୁଣି
ନିଶ୍ଚିନ୍ତ ହୋଇ ରହେ ମୌନୀ ।
ଲେଙ୍ଗୁଟି ପିନ୍ଧଣ ଦେଖାଇ
ଏଥିରେ ଦମ୍ଭଟି ଛାଡ଼ଇ ।

ଅଡୁଆ ଲମ୍ବିଲା ପଣତ ଲୋକର କରେ ମନମୋହ ।
ଶ୍ରମିକେ ସେହୁ ନୀଚ ମଣେ ଶ୍ରମକୁ ଘୃଣ୍ୟ ବୋଲି ଗଣେ,
ଏମନ୍ତ ଭାବ ଜ୍ଞାନୀଜନ ଆଦରେ ପିନ୍ଧଇ କୌପୀନ ।
ସିଝା ଦର୍ ସିଝା ସାରୁ ପୋଇ ଯେତେବେଳେ ଯା ମିଳୁଥାଇ
ତହିଁରେ ଅଳ୍ପେ ତୃପ୍ତ ହୋଇ ଆତ୍ମାନନ୍ଦରେ ଥାଏ ରହି ।
ଯେତ ମୂଲିଆ ବାଧ୍ୟ ହୋଇ ଯେ ଦୁଃଖକଷ୍ଟ ଯାଏ ସହି
ବାବୁମାନଙ୍କୁ ଈର୍ଷା କରି କାମରେ ଦାଏ ହେଲା କରି,
ପଣ୍ଡିତଜନ ସ୍ୱଇଚ୍ଛାରେ ସେ ଦୁଃଖକଷ୍ଟ ସହେ ଧୀରେ,
କୁଲିମୂଲିଆ ପ୍ରତିନିଧି ହୋଇ ପାରଇ ସେହି ଯୋଗୀ ।

× × ×

ଭୋଗ-ବିଳାସ ଗନ୍ତାଘର ସବୁ ପାପର ଜନ୍ମସ୍ଥଳ
ପ୍ରଲୋଭନର ନିକେତନ ଅଟଇ ସବୁ ନଗ୍ରମାନ ।
ମୂଢ଼ ମାନବ ଏହା ଭୁଲି ନଗ୍ରେ ମଣଇ ତୀର୍ଥସ୍ଥଳୀ ।
ଗ୍ରାମକୁ ନଗର ସମାନ କରିବ ବୋଲି ଧରେ ଟାଣ ।
ନଦୀରେ ବାନ୍ଧ ଅଣିକଟ ବିଜୁଳି ଶକ୍ତି କରି ଜାତ
ବୋଲଇ ଏବେ ଗ୍ରାମମାନ ହୋଇବ ନଗର ସମାନ ।
* ମୃଗୟାପ୍ରିୟ ନର ଯେହ୍ନେ ହିଂସ୍ର ପଶୁଙ୍କୁ ଖୋଜି ବନେ
ଯେତିକି ବିପଦେ ସେ ପଡ଼େ ସେତିକି ତାର ସୁଖ ବଢ଼େ ।
ପଦ ଆପଦ ନ ଯୋଚଇ ମୃଗୟା ସଦା ନ ମେଣ୍ଟଇ ।

---

* ମୃଗୟାପ୍ରିୟ ବ୍ୟକ୍ତି ବନ୍ୟଜନ୍ତୁର ସମ୍ମୁଖୀନ ହୋଇ ଆନନ୍ଦ ପାଇବା ପରି ବିଜ୍ଞାନ ବଳରେ ସ୍ୱାଚ୍ଛନ୍ଦ୍ୟପ୍ରୟାସୀ ନ ହୋଇ ଖରା, ବର୍ଷା, ଶୀତ ଓ ବାଧାବିଘ୍ନ ଅସୁବିଧାଦିର ସମ୍ମୁଖୀନ ହେବାରେହିଁ ଆନନ୍ଦ ମିଳେ ।

ତେସବେ ନଗର ସହର — ନୁହନ୍ତି ମୃଗୟାର ସ୍ଥଳ ।
ଦୁଃଖ ବିପଦ ଯହିଁ ନାହିଁ — ଜୀବନେ ସ୍ୱାଦ ନ ମିଳଇ ।
ପକା ସଡ଼କ କୋଠାଘର — ଯାନ ବାହନ ଚଳାଚଳ
ସର୍କସ ନାଟକ ସିନେମା — ଜୁଆଖେଳର ଧନାଧନା,
ସଜ୍ଜିତ ଦୋକାନ ବଜାର — ଜନତା ଗହଳ ଚହଳ
ଏ ସବୁ ଉପାୟ ବିଧାନ — ନଗରେ ହୋଇଅଛି ଜାଣି,
ଦୁଃଖ କଷ୍ଟକୁ ଏଡ଼ିଦେଇ — ବିଳାସେ ମଜ୍ଜିଯିବା ପାଇଁ,
ମୃତ୍ୟୁକୁ ଭୁଲିବାର ପାଇଁ — ଏ ଭ୍ରାନ୍ତ ବିଧାନ ଅଟଇ ।
ଯେ ଦୁଃଖ ଠାରୁ ରହେ ଦୂରେ — ଦୁଃଖ ତା ପିଚ୍ଛଧରି ବୁଲେ ।
ମୃତ୍ୟୁକୁ ଯେହୁ ମୂଢ଼ ଭୁଲେ — ମୃତ୍ୟୁ ତାକୁ କି ଛାଡ଼େ ଭଲେ ?
ମୃଗୟା-ବିନୋଦର ସ୍ଥାନ — ଅଟଇ ପଲ୍ଲିଗ୍ରାମମାନ ।
ବାଧା ବିପଦ ଦୁଃଖ କଷ୍ଟ — ଶୀତ ବରଷା ଗ୍ରୀଷ୍ମତାପ
ଏମାନ ବନ୍ୟଜନ୍ତୁ ପରି — ଅଛନ୍ତି ଗ୍ରାମେ ଗ୍ରାମେ ପୂରି ।
ଜୀବନ ଉପଭୋଗ ପାଇଁ — ନଗରେ ଏ ସୁବିଧା ନାହିଁ ।
ଏଣୁ ନଗର ପ୍ରଲୋଭନ — ଦୂରେ ତେଜଣି ଜ୍ଞାନୀଜନ
ଗ୍ରାମରେ ଯାଇ କାଟେ କାଳ — ବିପଦ ସଙ୍ଗେ କରି ଖେଳ

୩ । ପ୍ରଶ୍ନ—ଟଙ୍କାମୁହାଁ ହୋଇ ମଣିଷ ଆଜି କିପରି ପରସ୍ପରର ଗଣ୍ଠି କାଟୁଛି ?

ବୃହସ୍ପତି ଯେ ବିନୟରେ — ଭାଷନ୍ତି ଶ୍ରୀନାଥ ସମ୍ମୁଖରେ ।
ଶ୍ରୀନାଥ ଗୋସାଇଁ ଏ ଶୁଣି — ଦେବତାମାନଙ୍କ ଜଣାଣି
ମାନବେ ଅସୁରର ରୀତି — ଧରି ଦେବଙ୍କୁ ପୀଡ଼ା ଦ୍ୟନ୍ତି,
ଧରମ କରମକୁ ତେଜି — କେବଳ ଧନମଦେ ମଜ୍ଜି;
ନାନା ଉପାୟେ ଟଙ୍କା ଫନ୍ଦ — କରିଲେ ମୁଠି ସତ୍ୟେ ବନ୍ଦ ।

| | |
|---|---|
| କୋର୍ଟ କଚେରି ଅଉ ଥାନା | ଗଞ୍ଜାଇ-ଦୋକାନ ସିନେମା |
| ଲୁହା କାର୍‌ଖାନା, ଲୁଗାକଳେ | କୋଇଲାଖଣି ଟଙ୍କାଶାଳେ |
| ଯକ୍ଷପତି ଯେ କୁବେରକୁ | ଖଟାଇ କାଢ଼ନ୍ତି ଟଙ୍କାକୁ !! |
| ଲାଞ୍ଚମିଛ ଯେ ଜୁଆଚୋର | ଜାଲ୍ ଫିସାଦ ଠାଉଠର , |
| ଦାଲାଲଗିରି ମିଛସାକ୍ଷୀ | କଲମ ଚୋର ମୁହଁଫାଙ୍କି |
| ଏ ଆଦି କଉଶଳ କରି | ପଇସା ନିଅନ୍ତି ଯେ କାଢି |
| କୁବେର ଅଣ୍ଟିରୁ ଅସୁର | କରୁଣି ତାଙ୍କୁ କଲବଲ୍ । |
| ଦେବତା ଧନ ଏ ରୂପରେ | କରନ୍ତି ନାରଖାର କ୍ରୁରେ । |
| ନ ପାଇ ଦେବେ ଯଜ୍ଞଭାଗ | ଦୁଃଖେ ରହନ୍ତି ନିନ୍ଦ ଭାଗ୍ୟ । |

× × ×

| | |
|---|---|
| କେ ବଳବନ୍ତ ମୂଢ଼ନର | * ପଇସା ବଳରେ ପାଗଳ |
| ଗରିବଠାରେ ରୋଷ ବହି | ଜବଦ କରିବାର ପାଇଁ, |
| ଓକିଲ୍ ହାତେ ଟଙ୍କା ଗୁଞ୍ଜି | ମୁନସି ସଙ୍ଗେ ମେଣ୍ଟ ବାନ୍ଧି |
| ମିଥ୍ୟାର ନାନା ଦଫା ଯୋଡ଼ି | ତାହା ବରୁଦ୍ଧେ ଦଏ ଛାଡ଼ି । |
| ପର ଭଣ୍ଡିକି ଶପି ଶପି | ପର ଧନରେ ଦେଇ ଅଗ୍ନି |
| ପାପେ ଯେ ଧନ ଅର୍ଜିଥାଏ | ଏମନ୍ତେ ବିନବ୍ୟୟ ହୁଏ । |
| କ୍ଷରାନି ଓକିଲ୍ ମୁକ୍ତାର | ପିଅଦା ପୁଣି ଠାଉଠର |
| ପାଣିରେ ସରକୁ ପକାଇ | ଟଙ୍କା ତାହାର ଯାନ୍ତି ଖାଇ । |
| ପୁଣ କଲବ ପରିଜନ | ରୋଗେ ପଡ଼ନ୍ତି ଘନ ଘନ |
| ଡାକ୍ତର ବୈଦ୍ୟ ଅସି ଅସି | ବାକି ପଇସା ନ୍ୟନ୍ତି ଶୋଷି । |

* ଧନମଦାନ୍ଧ ବ୍ୟକ୍ତିମାନେ ମିଥ୍ୟା ମକଦମା ସୃଷ୍ଟିକରି ଗରିବମାନଙ୍କୁ ଜବଦ କରିବା ଅଭିପ୍ରାୟରେ ନିଜ ଜୀବନକୁ ଅଶାନ୍ତ କରନ୍ତି ।

ଏରୂପେ ତାର ପାପଧନ
ନାଅନ୍ତି ଟି. ... ମ ।

X X X

ନ ସନ୍ଧ ଶାଶୁର କଷଣ
ବୋହୂର ଚଟିଗଲା ମନ
ବିଷ ଖାଇଣ ସେହୁ ମଲା
ଦାରୋଗା ଦୁଆର ଜଗିଲା ।
ଶଏ ପଞ୍ଚଶେ ଖାଇ ସେହୁ
ଫେରିଲା ନାଶ ମୋଡ଼ଦେଇ ।
ଉଆଁକା ହେଲା ଗୁରୁଅଡ଼େ
ବୋହୂ ମରିଲା ହାଇଜାରେ ।
ଏମନ୍ତେ ରାଜକର୍ମଚାରୀ
ଲାଞ୍ଚର ଲୋଭକୁ ନ ଏଡ଼ି
ହିଂସା ଅସତ୍ୟ ଅନାଚାରେ
ପ୍ରଶ୍ରୟ ଦିଅନ୍ତି ଚତୁରେ ।
ଆଜ କଚେରି ଥାନାଘର
ଧର୍ମର ହୋଇ ନାହିଁ ପୀଠ,
ଅସତ୍ୟ ଅନ୍ୟାୟ ଧନର
ହୋଇଛି କାରବାର ସ୍ଥଳ ।
ଟଙ୍କା ଲୋଭରେ ମୁହଁ ପର
ହତାହତକୁ ଯାନ୍ତି ଭୁଲି ।

X X X

ଭୂଗର୍ଭ ତାଡ଼ଣେ ପଶନ୍ତି
କି ଅଛି ଭିତରେ ଖୋଜନ୍ତି,
ଏଣୁ ବସୁଧା ମହାକୋପେ
କମ୍ପଇ ବାରୁଁ ବାର ଆପେ ।
ବଳଦ ବାପୁଡ଼ାକୁ ନେଇ
କଂସାଇ ଘରେ ବିକା ଦେଇ,
ଦେବରାଜଙ୍କୁ ବାନ୍ଧି ନେଲେ
କଳ-ଲଙ୍ଗଳ ଧରାଇଲେ,
ବୋଲନ୍ତି ତୁହି ଚାଷ କର
ଆମକୁ ଯୋଗା ଧାନ ବିର ।
କୋଇଲା ପେଟ୍ରୋଲ ତେଲ
ଥାଉଁ ଏ ପୃଥିବୀ ଗର୍ଭର
ଏ ପେଗା ବଳଦଙ୍କୁ ନେଇ
ଖରାତରାରେ ଦହି ହୋଇ
କଷାଇଁ ଚାଷ କରିବାଇଁ
ଜାଣୁ ଜାଣୁ କି ହେବୁଁ ବାଇ ?

X X X

ଭ୍ରାନ୍ତ ବିଜ୍ଞାନେ ହୋଇ ମତ୍ତ
* କଳ-ଲଙ୍ଗଳେ ହୋଇ ଭକ୍ତ

* କଳଲଙ୍ଗଳରେ ଭୁଲିଯିବା ଅନୁଚିତ ।

ବୋଲନ୍ତି କରି ଅସ୍ଫାଳନ  ହଳିଆ ଦୁଃଖ ଗଲା ଜାଣି ।
ବଳଦ ଅଡ଼ାଇ ଅଡ଼ାଇ  ଖରା ତଳରେ ଦହି ହୋଇ
ଲଙ୍ଗଳ ମୁଠି ଧରି ସେହୁ  ହଳ ଯେ ନ କରିବ ଆଉ ।
ଗାଡ଼ି ଭିତରେ ବସି ରହି  ଚାଷ କରିବ ଜମି ସେହି ।
କେତି ଏକର ଅନାବାଦୀ  ଘଣ୍ଟାକେ ହୋଇବ ଆବାଦ,
ଅଳପ ଶ୍ରମେ ବହୁ କାମ  କରି ହୋଇବେ ଖୁସିମନ ।
ହଳିଆ କ୍ଷେତର ଶ୍ରମିକ  ଆମୋଦେ କାଳ କାଟିବେକ ।
କୋଇଲା ପେଟ୍ରୋଲ ତେଲେ  କଳ-ଲଙ୍ଗଳ ଯେଣୁ ଚାଲେ
ଦେଶ ଦେଶରେ ଲାଗି ଯୁଦ୍ଧ  ଯଦାଏ ବସ୍ତୁ ନ ମିଳିବ,
କଳ-ଲଙ୍ଗଳ ତେବେ ଧରି  କେ ଆଉ ଚାଷ ଯିବ କରି ?
* ଭାତ ଲୁଗାର ବୃଷ୍ଟିପାଇଁ  ଯେ ବସ୍ତୁମାନ ଲୋଡ଼ା ହୋଇ,
ଗ୍ରାମେ ଗ୍ରାମେ ସେ ବସ୍ତୁମାନ  ମିଳୁଣି ଥିବା ପ୍ରୟୋଜନ ।
ଗାଁଅର ବଢ଼ାଇ କମାରେ  କରିପାରନ୍ତି ଧାଡକାରେ,
ଲଙ୍ଗଳ ମୁଠି ଲୁହା ଫାଳ  ନ ଥାଏ ଏଥେଁ କଣ୍ଟୁ-ଗୋଳ ।
କଳର ଲଙ୍ଗଳ ବା ଯେବେ  ଅକାମୀ ହୋଇଯିବ ତେବେ,
ଇଞ୍ଜିନିୟର ଦୂରୁ ଆସି  ତାହାକୁ ସଜାଡ଼ିବ ବସି ।

× × ×

କଳରୁ ପ୍ରସାଦୁ ମାନବ  ଧରିଛି ଅଳସୁଆ ଭାବ ।
ଲୁଗାଖଣ୍ଡିରେ ରଖି ଆଶା  ରଖିଲା କଳରେ ଭରସା ।
ଲୁଗାକଳର ପୁଞ୍ଜିପତି  ଲୁଗା ବିକଣି ମନମାପି,
ବହୁତ ଲାଭ ଉଠାଇଲା  କଳାବଜାର ମେଲି ଦେଲା,

* ଭାତ ଲୁଗାର ସୃଷ୍ଟିପାଇଁ ସହଜ ଲଭ୍ୟ ଓ ସରଳ ଯନ୍ତ୍ର ଉପରେ ନିର୍ଭର କରିବା ଉଚିତ ।

ନିଜର ଭାତ ରାନ୍ଧି ନିଜେ ଖାଆନ୍ତି ଯେପରି ଆଜି ସର୍ବେ,
ସେପରି ସୂତା କାଟି ଆପେ ବୁଣାଇ ଗ୍ରାମତନ୍ତୀ ହାତେ,
ସେ ଲୁଗା ପିନ୍ଧିବାଟି ସାର ଏହା ଭୁଲିଲା ମୂଢ ନର ।
ସର୍ବେ ବୋଲନ୍ତି ନାହିଁ ବେଳ ସୂତା କାଟିବୁ କେତେବେଳ,
ଅନ୍ନକୁ ଭୁଞ୍ଜିବାର ପାଇଁ ❋ ସମୟ ଯଦିବା ଘଟଇ,
ବସନ ସରଜିବା ପାଇଁ ସୂତାକଟାକୁ ତର ନାହିଁ,
ଏ ଅଟେ ଅଦ୍ଭୁତ ଯୁକତି ଏ ଅଜ୍ଞ ବୁଝାବଣା ରୀତି ।
ସୁଖୀ ସେ ଯେହୁ ଆପେ ସୃଜେ ନିଜର ଭାତ ଲୁଗା ନିଜେ ।
ମାନବେ ହିଂସ୍ରପଶୁ ପରି ପରସ୍ପରକୁ ହିଂସା କରି,
ଜୀବନେ ସାର କଲେ ଟଙ୍କା * ଅଜ୍ଞ ସବୁ ଯେ ପଛକଥା ।
ଅଳ୍ପ ପଇସା ଯହିଁ ହୁଏ, କେହି ତା ବସ୍ଥାରେ ନ ଯାଏ ।
କିଏ କି କାମ କରି କେତେ ଟଙ୍କା ପାଉଛୁ ମାସେ ମାସେ,
ଏହା ହୋଇଛି ସମାଜର କୁଶଳ ପ୍ରଶ୍ନ ସମାଚ୍ଚର ।
ପଇସା ଅର୍ଜିବା ଫିକର ଏମନ୍ତେ ବିଚ୍ଚରନ୍ତି ମୂଢ,
ଖରାବର୍ଷାରେ କଲେ ହଳ ସେଥିରେ ବା ମାଜିଣେ ମିଳେ ମୂଲ,
ଆଠଘଣ୍ଟାରେ ଆଠଅଣା ଏ ଅଟେ ହଳିଆ ପାଉଣା;
ସେ ଯେବେ ଯାଇଣ ସହରେ ବଡ଼ କମ୍ପାନି କାରଖାନାରେ,
କରିବ ବଡ଼ବଢ଼ା କାମ ଦୁ ଟଙ୍କା କରିବ ଅର୍ଜନ ।
ଅଥବା ଟାଣି ରିକ୍ସାଗାଡ଼ି ଖଟିବ ସଦା ଦିନଭରି,
ପାଞ୍ଚଟଙ୍କାରୁ କମି ସେହି କଦାପି ପାଇବ ସେ ନାହିଁ ।

---

❋ ଖାଇବା ପାଇଁ ଯେତିକ ସମୟ ଦିଆ ଯାଉଛି, ପିନ୍ଧିବାପାଇଁ ସେତିକ ସମୟ ସୂତାକଟାରେ ଦେବା ଉଚିତ ।

* ଟଙ୍କାର ମୋହ ସମସ୍ତଙ୍କୁ ଘାରିଛି ।

ବସିଣ ଅବା ଛାଇତଳେ ଗୁହା ଦୋକାନ ମେଲ୍‌ଦେଲେ
ଧନକୁ ତନ ଗୁରୁ ଟଙ୍କା ମାରନେବ ସେ ଏକା ଏକା ।
ତେବେ କମାଇ ଖର୍ ସହି କରବ କେତେ ହଲ ଯାଇ ?
ବୃଥାରେ କଅଁ ସୂତା କାଟି କରବ କେମା ଅଙ୍ଗୁଳିକ ?
ଏଥିରେ ପଇସା ତ ନାହିଁ ତେବେ ଖଟିବ କାହିଁପାଇଁ ?
ମୂଢ ଏସବେ ଯୁକ୍ତି ବାଢି ଭାଗ ଲଗାର ସୃଷ୍ଟି ଛାଡ଼ି,
ସଙ୍କାର୍ଥେ ଶରୀର ଧାରଣ ଏ ସତ୍ୟ କର ବିସ୍ମରଣ
ଯେଖା ହାତେ ସେ ଚଉଦ ପା' ହୋଇଣ କମାନ୍ତ ଯେ ଟଙ୍କା ।
କେଉଁଠୁ ଭାଗ ଲଗା ଆସେ କାହାର ମୁଣ୍ଡରେ ନ ପଶେ ।
ଟଙ୍କାଟି ଥିଲେ ଲଗା ଭାଗ ବଳେ ହୋଇବ ପରାପତ
ଏ ମୂଢ଼ ଧାରଣାରେ ପଡ଼ି ଘାର ହୁଅନ୍ତ ନରନାରୀ ।
ଖର୍ ବରଷା ଶୀତ ଏଡ଼ି ଶରୀରଶ୍ରମ ଦେଇ ଛାଡ଼ି
କେମନ୍ତେ ମିଳିବ ପଇସା ସଭିଙ୍କର ଏ ଗୁପ୍ତ ଆଶା ।
ଲାଗିଛୁ ନାନା ଜୁଆଖେଳ, ଟଙ୍କା ଫନ୍ଦର କଉଶଳ ।
* ସାଇନବୋର୍ଡ଼ ଟାଙ୍ଗି କେହି ବଡ଼ ଡାକ୍ତର ବୋଲ୍ କହି,
'ଅସାଧ୍ୟ ସାଂଘାତିକ ରୋଗ ସାଧ୍ୟ କରେ ମୋ ଔଷଧ,
ପରୀକ୍ଷା ପ୍ରାର୍ଥନୀୟ ଥରେ ଆସ ଏଠାକୁ ସୁଲ୍ଲନରେ ।'
ଏମନ୍ତେ ଲେଖି ସାଇନ୍‌ବୋର୍ଡ଼େ ଗୁହିଁ ରହେ ସେ ରାସ୍ତା ଆଡ଼େ ।
ରାସ୍ତା ଲୋକଙ୍କୁ ସେହି ଦେଖି ଭାବଇ ହୋଇ ମନେ ଦୁଃଖୀ,
ଭୀଷଣ ଛନ୍ଦମନ୍ଦ ବ୍ୟାଧି କାମଲ, ଶୋଥ, ଯାବୁ, ଟିବି

---

* ଡାକ୍ତରର ସାଇନ୍‌ବୋର୍ଡ଼ ଓ ପେଟେଣ୍ଟ ଔଷଧର ମୋହରେ ଲୋକେ ନିର୍ଭୀକ ଭାବରେ ପାପକାର୍ଯ୍ୟ କରୁଅଛନ୍ତି ଓ ଅସଂଯତ ଆହାର-ବିହାରାଦିରେ ଲିପ୍ତ ହେଉଛନ୍ତି ।

ଏହି ଲୋକଙ୍କଠାରେ ମୁହିଁ  ମୋ ଦିବ୍ୟ ଚକ୍ଷୁରେ ଦେଖଇ ।
ଏମାନେ ମୋ ପାଶେ ନ ଆସି  ମରଣ ସ୍ରୋତେ ଯା'ନ୍ତି ଭାସି ।
ବସନ୍ତ ଋତୁରେ ଆଦର  ଥାଏ ଯେ ସକଳ ଜନର
ଦୁର୍ଦ୍ଦିନେ ବରଷାର କାଳ  ଏଥେ ପୀରତ ଡାକ୍ତରର ।
ଏକାଳେ ବହୁ ରୋଗ ବଢ଼ି  ଡ଼ାକ୍ତର ଥଳି ଯାଏ ଭରି ।
ଜପ କରଇ ଖୁସିମନେ  ଏ ଋତୁ ଆଉ ସବୁ ଦିନେ ।
ସର୍ବଦା ହଉଜା ବସନ୍ତ  ନାଉମୋନିଆ ସନ୍ନିପାତ,
ଲାଗିଥାଉ ଏ ଦେଶସାରା  ଅମକୁ ହେଉ ଯେ ଡାକରା ।
* ଆନ କେ ଓକିଲ ବୋଲଇ  ସୁଖେ କୋଠାରେ ବସିରହି
କୁହଇ ଗୁଡୁରୁ ଦେଖାଇ  ମୋଠାରୁ ବଡ଼ କେହି ନାହିଁ
ମୋର ଜେରାରେ ପଡ଼ି କେହି  ବାରିଷ୍ଟର ଯେ ବର୍ତ୍ତି ନାହିଁ
ମୋର ବକ୍ତୃତାଧାରା ଶୁଣି  ହାକିମମାନେ ହୋନ୍ତି ତୁନି,
ଫାଶୀକାଠରୁ ମୁକୁଳାଇ  ମୁଁ ଏକା ଆଣି ଯେ ପାରଇ
ମୁହିଁ ଧରଇ ଯାର ପଟ  ଜୟ ତାହାର ସୁନିଶ୍ଚିତ ।
କଳାକୁ ଧଳା କରିଦେଇ  ଧଳାକୁ କଳା ମୁଁ କରଇ,
ସହାୟହୀନେ ସାହା ହୋଇ  ବିପଦୁ ଉଦ୍ଧାରିବା ପାଇଁ
ସତକୁ ମିଛ କରିବାରେ  ମୋଠାରୁ ବଡ଼ କେ ସଂସାରେ ?
ସତକୁ ମିଛ ମିଛେ ସତ,  ଯୁକ୍ତିରେ କରେ ମୁଁ ସାବ୍ୟସ୍ତ,
ଏଣୁ କଏଦୀ ଫାଶୀଖୁଣ୍ଟୁ  ଉଦ୍ଧାର କରେ ବହୁତଙ୍କୁ,
ମୋ ବିନେ ଗୃହହୀନ ନରେ  ହୋଇ ଯାଆନ୍ତେ ଦଣ୍ଡକରେ ।
ମୋ ବିନେ କେତେ ହଣା ମରା  ଘଟି ଯାଆନ୍ତା ଦେଶସାରା,

* ଓକିଲମାନେ ଟଙ୍କା ଲୋଭରେ ଅନ୍ୟାୟ ପକ୍ଷକୁ ମଧ୍ୟ ସମର୍ଥନ କରୁଥିବାରୁ ଦେଶରେ ଅସତ୍ୟ ଓ ହିଂସା ବ୍ୟାପୁଛି ।

ମୋ ଧନେ ଲୋକେ ଜମିବାଡ଼ି    ହରାଇ ହୁଅନ୍ତେ କାଙ୍ଗାଲ୍,
ସାମାନ୍ୟେ ମିଛ ସତ କହୁ    ଘୋର ବିପଦ୍‌ରୁ ତାରେ ମୁହିଁ ।
ମିଥ୍ୟାର ସମର୍ଥନ ପାଇଁ    ଓକିଲ୍ ଏସନ ଭାବଇ ।
ଟଙ୍କାର ମୋହମଦେ ପଡ଼ି    ଧରମ ପଥ ଦେଇ ଛାଡ଼ି
ଅନ୍ୟାୟ ଅସତ୍ୟକୁ ସେହୁ    ସତ୍ୟ ରୂପେଣ ଦିଏ ଥୋଇ ।
ମହକିଲଙ୍କୁ ଦିଏ ଶିକ୍ଷା    ଭାଷିବେ ଯେସନେ ସେ ମିଥ୍ୟା ।
ଯଦି କେ ବୃଦ୍ଧ ପଲ୍ଲିବାସୀ    ବୋଲଇ ଗଦ୍‌ଗଦେ ଭାଷି,
ଏତେ ମିଛ ମୁଁ କେମନ୍ତରେ    ଭାଷିବି ହାକିମ ଅଗରେ ?
ଆଖିକି ତରାଟି ମରାଟି    ଓକିଲ କରଇ ଯେ ପାଟି,
ତେବେ ଏ ମକଦ୍ଦମା ଜୟୀ    ହୋଇ ପାରିବୁ ନାହିଁ ତୁହି ।
ମିଛକୁ ନ କହୁ କି କେହୁ    ଏ ଦୁନିଆରେ ଅଛୁ ରହୁ ?
ବୋକାମୀ ତୋର ଛାଡ଼ିଦେଇ    ବୁଦ୍ଧି ଅକଲ୍ ଶିଖ ତୁହି,
ଯାହା ମୁଁ ଶିଖାଇଲି ତୋତେ    କହିବୁ ହାକିମ ଅଗ୍ରତେ ।

× × ×

ଦେବଗୁରୁ ଯେ ବୃହସ୍ପତି    ନିନାଥ ଅଟେ ବଖାଣନ୍ତି ।
କାମିନୀ-କାଞ୍ଚନ ମାୟାରେ    ପଡ଼ଣି ଅଜ ମୂଢ଼ନରେ
ସେବା ଧରମ ପାଶୋରିଲେ    ଆପଣା ସ୍ୱାର୍ଥରେ ମଜିଲେ ।
ଘୋର ଅନର୍ଥ ଅଟେ ସ୍ୱାର୍ଥ    ଏ ସତ୍ୟ ଭୁଲିଲା ଜଗତ ।
ଧନୀ ହେବାକୁ ଉଡ଼ବଡ଼େ    ନାନା ଫିସାଦ କଲେ ନରେ ।
କେତେ ଯେ ରାଣ୍ଡୀଖଣ୍ଡୀ ଦୁଃଖୀ    ବଞ୍ଚି ଅଛନ୍ତି ଧାନ କୁଟି ।
ଅଳ୍ପକେ ଟଙ୍କା କୋଟି କୋଟି    ମାରିନେବାକୁ ମନେ ପାଞ୍ଚି
ଗୁହାଳ-କଳ ଠିଆ କଲେ    ରାଣ୍ଡୀଙ୍କ ଦାନା ବୁଡ଼ାଇଲେ ।
କାଟି ପିନ୍ଧିବା ପାଇଁ କେହୁ    ଯେତେକେ କେ ମନ ନ କରୁଛି



[ଯେବେ ହେ ବନ୍ଧୁ ପଲ୍ଲୀବାସୀ,      ବୋଲଇ ସଦରଦେ ସ୍ପଷ୍ଟେ<br>
ଏବେ ମିଛ ମୁଁ କେମନ୍ତରେ,      ଶିକ୍ଷିତ ହାକିମ ଆଗରେ ?<br>
ଅଶିକ୍ଷିତ ତସନ୍ତି ମରନ୍ତି,      ଓକିଲ କରଇ ଯେ ପାଞ୍ଚି,<br>
ତେବେ ଏ ମକଦ୍ଦମା ଜୟୀ,      ହୋଇ ପାରିବୁ ନାହିଁ ତୁହି ।]

ପୃ—୨୩

*ଲୁଟି ଖାଇବା ପାଇଁ ତେବେହେଁ      ଅଜା କେ ନ ଘେନଇ ମନେ ।<br>
କଳ-ଗ୍ରୁଜଳଠାରୁ ସନ୍ଧି      ଲୁଟିବା ଭଆର ପଡ଼ଇ,

* ଗ୍ରୁଜଳ-କଳ ସଣ୍ଡୀଖଣ୍ଡୀଙ୍କର ସର୍ବନାଶ କରୁଛି ।

ହୁସାରୀ ନର ସେହିଠାରେ ଧାନ କୁଟାଇ ଭାତ କରେ ।
ଲଭନ୍ତି ଯେଉଁଠାରେ ନାହିଁ, ସୀମା ତାର କେ ମାଡ଼େ ନାହିଁ ।
କାମିନୀ ଅଥବା କାଞ୍ଚନ ଭୋଗ ବିଳାସ ବିହରଣ ..
ଏ ସବୁ ଗନ୍ଧ ଯହିଁ ନାହିଁ, ମୂଢ଼ଙ୍କୁ ତାହା ନ ରୁଚଇ ।

ଇତି ଶ୍ରୀ ଧର୍ମରାଜ୍ୟେ ଦ୍ୱିତୀୟ ଖଣ୍ଡେ ବୃହସ୍ପତି ଜଣାଣେ କାମିନୀ-କାଞ୍ଚନର ପିଶାଚୀନାଶ ବର୍ଣ୍ଣନ ନାମ ଦ୍ୱିତୀୟ ଅଧ୍ୟାୟ ।

—୫*୫—

# ତୃତୀୟ ଅଧ୍ୟାୟ

ସ୍କୁଲ୍ କଲେଜର ଛାତ୍ର ଏବଂ ଅଧ୍ୟାପକଙ୍କ ଗୁଣ ଓ କର୍ମ ।

୪ । ପ୍ରଶ୍ନ—ଛାତ୍ରମାନଙ୍କୁ ସଂଯତ, ଅନାସକ୍ତ ଓ କଷ୍ଟସହିଷ୍ଣୁ ହେବାକୁ ଶିକ୍ଷା ଦେବା ପରିବର୍ତ୍ତେ ସେମାନଙ୍କୁ କିପରି ବିଳାସୀ ଓ ଅସଂଯତ କରି ଦିଆଯାଉଛି ?

ବୃହସ୍ପତି ଉବାଚ

ଦେବଙ୍କ ଗୁରୁ ବୃହସ୍ପତି ଶିନାଥ ଛାମୁରେ ଭାଷନ୍ତି ।
ଶିନାଥ ଗୋସାଇଁ ହେ ଶୁଣ ଦେବତାମାନଙ୍କ ଜଣାଣ ।
ମାନବେ ଅସୁରର ରୀତି ଧରି ଦେବଙ୍କୁ ପୀଡ଼ା ଦ୍ୟନ୍ତି ।
ଇସ୍କୁଲ୍ କଲେଜ କୋଠାରେ ପୁଅ ଝିଅଙ୍କ ପଢ଼ାଘରେ,
କାମଦେବ ଯେ ଅଛି ବନ୍ଦୀ କାଳ କାଟନ୍ତି କାନ୍ଦି କାନ୍ଦି ।
ହେନା ଅତର ପାଉଡ଼ର ସାବନ କାବୁଲ୍ ସାଣ୍ଡାଲ୍
ଫର-କଲମ କଳ-ଘଡ଼ି ଗୁଡ଼ାଖି ସିଗାରେଟ ବିଡ଼ି
ଲୁଙ୍ଗି ଜଙ୍ଘିଆ ଝୀନବାସ ପାଉଁରୁଛି ଯେ ଅଣ୍ଡା ମାଂସ

ଏ ଅବା ବିଳାସ ସାମଗ୍ରୀ
କପଡ଼ ବେଶଭୂଷା ହେଲେ
ହୋଇଣ କାମ ଜରଜର
ଏ ଅବା କାମଦେବ ଗୀତ
କୁଞ୍ଚିତକେଶ ପୃଷ୍ଠ ବେଣୀ
ବାଙ୍କ ଶୁଙ୍ଘାଣି ସରୁ ଟେରି
ମଦନ ଦେବତା ଭୁଲାନ୍ତି
କଥା କପଡ଼ ଫେସନରେ
ସଭିଙ୍କ ମୁଖ ବନ୍ଦ ହେବ

୧ ଛାତ୍ରଙ୍କୁ ଯୋଗାନ୍ତି ସେ ତରି ।
କେଶ କପଡ଼ ସଜାଡ଼ିଲେ,
ବାଳକେ ଦିଶିବେ ସୁନ୍ଦର,
ଛାତ୍ରଙ୍କୁ ଯତନେ ଶିଖାନ୍ତି ।
ପ୍ରଜାପତିଆ କାଶ ପୁଣି
ଏ ଅବା ଯେତେ କାରିଗରୀ
ଛାତ୍ରଛାତ୍ରୀଙ୍କୁ ନିତପ୍ରତି ।
କହିଲେ ପିଶାଚୀ ଭାଷାରେ
ଏହା ଶିଖାନ୍ତି କାମଦେବ ।

× × ×

ଛାତ୍ର ଯେ ବ୍ରହ୍ମଚର୍ଯ୍ୟ ପାଳି
ନ ହେବାଯାଏ ଶିକ୍ଷା ଶେଷ
ଯଦ୍ୟପି ଛାତ୍ର ଶିକ୍ଷାବେଳେ
ବୁଦ୍ଧି ଭେଦ ଯେ ଘଟି ତାର
ସଂଯମ ଯାହା ଶିଖିଥାଏ
ଲଣ୍ଡିତ ମୁଣ୍ଡ ରୁକ୍ଷ ବେଶ
ଗନ୍ଧ ଚନ୍ଦନ ପୁଷ୍ପମାଳ
ଏ ଅବା ତେଜ ବ୍ରହ୍ମଚାରୀ
ଦେହରେ ନ ଦେଇ ନଜର
ଲଜ୍ଜାକୁ ନିବାରିବା ପାଇଁ

ଗୁରୁଗୃହରେ ରହି ପଢ଼ି,
ଗୃହକୁ ନ ଆସଇ ଶିଷ୍ୟ ।
ଗୃହକୁ ଆସେ ଥରେ ଥରେ
ଶିକ୍ଷା ତା ହୁଅଇ ବିଫଳ ।
ଗୃହେ ତା ପାଶୋରି ପକାଏ ।
ଧରଇ ବ୍ରହ୍ମଚାରୀ ଶିଷ୍ୟ ।
ବେଶଭୂଷା ଯେ ଅଳଙ୍କାର
୨ଗୁରୁ ଆଜ୍ଞାକୁ ଥିବେ ଧରି ।
ଦିଶିବେ ରୁକ୍ଷ କଦାକାର ।
କୌପୀନ ମାତ୍ର ପିନ୍ଧି ରହି

---

୧ ଛାତ୍ରମାନଙ୍କର ଭୋଗସ୍ପୃହା ଓ ବ୍ୟଭିଚାର ବଢି ବଢି ଚାଲିଛି ।
୨ ଛାତ୍ରର କର୍ତ୍ତବ୍ୟ ବ୍ରହ୍ମଚର୍ଯ୍ୟ ପାଳନ ।



[ଉପର ବେଶଭୂଷା ହେଲେ, କେଶ କାଟର ସଜାଡିଲେ
ହୋଇଣ କାମ କାତର, ବାଳକେ ଭାସିବେ ସୁନ୍ଦର ।
ଏ ଆଢ଼ କାମଦେବ ମାଷ୍ଟ, ବୃଦ୍ଧଙ୍କୁ ଯତନେ ଶିଖାନ୍ତୁ ।]

ପୃ—୨୭

ଆନ ପୋଷାକ ବିସର୍ଜିବେ କଠିନ ଶଯ୍ୟାରେ ଶୋଇବେ ।
ନିଦ୍ରା ଆଳସ୍ୟ ପରିହରି *ବ୍ରାହ୍ମମୁହୂର୍ତ୍ତେ ଶଯ୍ୟା ଛାଡ଼ି
ଆତ୍ମଧ୍ୟାନରେ ରତ ହେବେ ଅହଂକାରକୁ ବରଜିବେ ।
ଶରୀର ଧାରଣର ପାଇଁ ଅନ୍ନ ଯେ ପ୍ରୟୋଜନ ହୋଇ,
ମୂଢ଼େ ଏହାକୁ ଭୁଲିଯାଇ ଜିହ୍ୱା ତୃପ୍ତିରେ ବାଇ ହୋଇ
ଖାଦ୍ୟକୁ କରି ରୁଚିକର ଯତନେ କରନ୍ତି ଆହାର ।

---

* ଛାତ୍ରର ରୁକ୍ଷ କେଶ ଓ ରୁକ୍ଷ ବେଶ ଧାରଣ କର୍ତ୍ତବ୍ୟ ।

ଛାତ୍ର ଏପରି ନ କରିବ    ୧ ଜିହ୍ୱାକୁ ନିରୋଧ କରିବ ।
ଯେଉଁ ଶ୍ରମକୁ କଲେ ଘୃଣ    ଅହଂକାର ତା ହେବ ଲୋପ
ବିନୟ ସୌଜନ୍ୟ ପ୍ରକାଶି    ଦେହ ବୁଦ୍ଧିକି ଦେବ ନାଶି,
ସେ କର୍ମମାନ କରିଯାଇ    କର୍ମ କୌଶଳେ ସିଦ୍ଧ ହୋଇ,
ଈପ୍‌ସିତ ଜ୍ଞାନକୁ ଲଭିବେ    ଗୃହସ୍ଥାଶ୍ରମେ ପ୍ରବେଶିବେ ।

× × ×

ଆଜି ଇସ୍କୁଲ୍ କଲେଜରେ    ଛାତ୍ର ଯେ ରୀତି ପାଠ ପଢ଼େ
ଶିକ୍ଷକ ଅଧ୍ୟାପକଗଣେ    ଲଭିଣ ମାସିକ ବେତନ,
ଶିକ୍ଷା-ବିଭାଗ ଇଙ୍ଗିତରେ    ଗଠିଣ କଙ୍କର ପ୍ରକାରେ
ଘଣ୍ଟାଧ୍ୱନିରେ ରଖି ମତି,    ସେ ପାଠ ପଢ଼ାଇ ଯାଆନ୍ତି
ଜୀବନ ସଙ୍ଗେ ସେ ପାଠର    ରହଇ ନାହିଁ କିଛି ମେଳ ।
ବିଷୟବସ୍ତୁ ମନେରଖି    ପରୀକ୍ଷାରେ ଯେ ପାରେ ଲେଖି
ସେ ହୋଇ ସୁବୁଦ୍ଧିର ପାତ୍ର    ବୋଲାଏ ଯୋଗ୍ୟତମ ଛାତ୍ର ।
ଶରୀର ଶ୍ରମେ ଘୃଣା କରି    ଛାତ୍ର ଶିଖଇ ଆଗ କରି ।
ନିଜ ବୁଜୁଳି ମୁଣ୍ଡେ କାନ୍ଧେ    ଧରନ୍ତେ ମରିଯାଏ ଲାଜେ ।
ଚର୍ମକନ୍ଦୁକ ଖେଳି ଖେଳି    ଝାଳରେ ସେହୁ ଯାଏ ବୁଡ଼ି,
କୋଡ଼ିହଣାରେ ଲାଜ ବଢ଼େ    ହାଣି ଅସେ ନା ବୋଲି କହେ ।
୨ଶୀତ ବରଷା ଗ୍ରୀଷ୍ମତାପ    ବାଧା ବିପଦ ଦୁଃଖ କଷ୍ଟ,
ସତ୍ୟ, ଅହିଂସା, ସେବା, ତପ,    ସଂଯମ, ତ୍ୟାଗ, ଦୟାବ୍ରତ

---

୧ ଛାତ୍ରର ସ୍ୱାଦବର୍ଜନ ଏବଂ ଉତ୍ପାଦକ ଶରୀରଶ୍ରମ କର୍ତ୍ତବ୍ୟ ।

୨ ସଂସାର-କ୍ଷେତ୍ରରେ ପ୍ରବେଶ କରିବା ପୂର୍ବରୁ ଛାତ୍ରମାନେ ଗ୍ରୀଷ୍ମ, ବର୍ଷା, ଶୀତ, ବାଧାବିଘ୍ନ ଓ ଦୁଃଖକଷ୍ଟାଦିର ସମ୍ମୁଖୀନ ହୋଇଥିବା ବିଧେୟ ।

ଏ ସବୁଠାରୁ ଦୂରେ ରହି  ଜୀବନ ନିଏ ସୁଖେ ବାହି ।
ଇନ୍ଦ୍ରିୟଙ୍କ ହୋଇ ଦାସ,  ସଂସାରେ କରଇ ପ୍ରବେଶ ।
ଏ ଘୋର ସଂସାର ଗହନ,  ଦଶଇ ତାହାକୁ ଭୀଷଣ ।
ଜୀବନରୂପୀ-ବନେ ସେହି  ମୃଗୟା କେବେ କରି ନାହିଁ ।
ଏ ମନରୂପୀ ତୁରଙ୍ଗମ  ଧରିଣ ତାହାର ଲଗାମ
କେବେ ତ ଚଳି ଶିଖି ନାହିଁ  ତାଲିମି ଶିବିରରେ ସେହି ।
କାମ କ୍ରୋଧକୁ ରୋକିଦେଇ  ସଂଯତ ଅନାସକ୍ତ ରହି
ଶୀତ ବରଷା ଗ୍ରୀଷ୍ମ ତାପ  ବାଧା ବିପଦ ଦୁଃଖ କଷ୍ଟ
ଏ ଆଦି ବନ୍ୟଜୀବେ ଭେଟି,  କରି ତ ନାହିଁ କେବେ ଗୃଠ ।
ଏଣୁ ସଂସାରେ ପ୍ରବେଶିଣ  ହୋଇଲା ସେହି ନାକେଦମ
ଗୋଲମି ମଣି ସାରପନ୍ଥା  ବିକିଲା ତାର ନିଜ ଆତ୍ମା ।
କଲମ ଘଷି ଘଷି ସେହି  କିରାନିଟିଏ ହେଲା ଯାଇଁ ।
କିରାନି ତାଲିମି ଶିବିର  ଅଟନ୍ତି କଲେଜ ଇସ୍କୁଲ ।
*ସର୍ବଜ୍ଞ ସର୍କାର ହୁକୁମେ  ଶିକ୍ଷକ ଅଧ୍ୟାପକଗଣେ
ଆପଣା ସ୍ୱତ୍ୱ ହରାଇ  ଯନ୍ତ୍ରଚାଳିତ ପରି ହୋଇ
ଲେଖା ପଢ଼ାକୁ ସାର ଧରି  କରନ୍ତି କିରାନି ତିଆରି ।
ଜ୍ଞାନ, କରମ, ନିଷ୍ଠା ସହ  ଏ ତିନିଙ୍କର ସମନ୍ୱୟ
ଏହାର ନାମ ସାରଶିକ୍ଷା  ଏହା ବିହୁନେ ପାଠ ବୃଥା ।
ଏହା ବିହୁନେ ଓକିଲାତି  ଡାକ୍ତର ଆଦି ଯେ ପଢ଼ନ୍ତି
ଦ୍ୱିତୀୟ ଶନି ଯମସମ  ସେହୁ କରନ୍ତି କ୍ରୂର କର୍ମ ।
ସର୍ବଜ୍ଞ ରୂପେ ସରକାର  ମଣିଣ ନିଜକୁ ଈଶ୍ୱର

---

*ସରକାରର ଭ୍ରାନ୍ତ ଶିକ୍ଷାନୀତି ଫଳରେ ସର୍ବପ୍ରକାର ସେବକମାନଙ୍କ ମଧ୍ୟରେ ଶିକ୍ଷକର ସ୍ଥାନ ନିମ୍ନତମ ହୋଇଛି ।

ପ୍ରଜାର ହାତ ମଥାଗତ ସବୁଟି ... ଆୟତ୍ତ ।
ରାଜ୍ୟର ଦାୟାଦ ସରବେ କି ଜ୍ଞାନ ... ହେବେ
କିସ ବା ସେମାନେ ଜାଣିବେ, କେଉଁ କଥାକୁ ନ ଜାଣିବେ
କି କର୍ମ ସେମାନେ କରିବେ, କେଉଁ କର୍ମକୁ ବରଜିବେ
ସର୍ବଦା କେଉଁ ଚିନ୍ତାରାଶି ରହି ମୁଣ୍ଡରେ ଥିବ ପଶି,
ଗୁରୁ ପଢ଼ାଇ କେଉଁ ପାଠ ଗଢ଼ିବେ କରିବେ ରାଜଭକ୍ତ
ଏ ଚିନ୍ତା ସଦା ସର୍କାରର, ଏଣୁ ଶିକ୍ଷା ତା ଅଧିକାର ।
ଏଣୁ ଯେ କଳର ପୁତ୍ତଳି— ପରି ଏ ଶିକ୍ଷକ-ମଣ୍ଡଳି
ସର୍କାର ଆଜ୍ଞା ଅନୁସରି ବହି ପଢ଼ାନ୍ତି ଜ୍ଞାନ ହୁଡ଼ି ।
ଶିକ୍ଷା ବିଭାଗ ଯେଉଁ ପାଠ ଆଗରୁ କରିଛି ନିର୍ଦ୍ଦିଷ୍ଟ
ହୃଦୟ ସଙ୍ଗତେ ଯାହାର ନାହିଁ ସମ୍ପର୍କ ଅବା ମେଳ,
କେବଳ ଲିଖନ ପଠନ ଅଥବା ସୁସ୍ପଷ୍ଟ ଭାଷଣ
ଏ ତିନି ଛଡ଼ା ଆନ କିଛି ଯେଉଁ ନିର୍ଦ୍ଦେଶେ ନ ରହିଛି,
ଶିକ୍ଷକ ସେତିକି ପଢ଼ାଇ ଅଥବା ମୁଖସ୍ଥ କରାଇ,
କର୍ତ୍ତବ୍ୟ ତାର ଶେଷ କରେ, ଘଣ୍ଟା ବାଜନ୍ତେ ଗୃହେ ଚଳେ ।
ଯେସନେ ଆଖଡ଼ାର ଘରେ, ଓସ୍ତାଦ ଗୀତ ଗାଏ ଧୀରେ
ତା ପଛେ ଗୋଟିପୁଅମାନେ ସେ ଗୀତ ଗାଇ ତାନେ ମାନେ
ତାହାକୁ କରିଣ ମୁଖସ୍ଥ ଶେଷେ କରନ୍ତି ଅଭିନୀତ,
ତଥା ଇସ୍କୁଲ କୋଠାଘରେ ଶିକ୍ଷକେ ଓସ୍ତାଦ ପ୍ରକାରେ
ବହି ଧରିଣ ଯା'ନ୍ତି ଗାଇ ଶବ୍ଦର ଅର୍ଥ ଦ୍ୟନ୍ତି କହି ।
ସେ ଛାତ୍ର ତାହା ରଖି ମନେ କଣ୍ଠସ୍ଥ କରିଣ ସମ୍ପୂର୍ଣ୍ଣେ
ପରୀକ୍ଷା ରଙ୍ଗମଞ୍ଚ ପରେ ସଫଳେ ଅଭିନୟ ସାରେ,
ସେ ହୁଏ ଶିକ୍ଷିତ ସାକ୍ଷର ଅପରେ ମୂର୍ଖ ନିରକ୍ଷର ।
ଶେଷ ହୁଅଇ ତାର ଶିକ୍ଷା ହୋଇଥାଉ ସେ ପଛେ ତୋତା

୧ ଗୁରୁ ଶିକ୍ଷକ ଅଧ୍ୟାପକ    ଅଟନ୍ତି ଜାତିର ଚାଳକ ।
ଆତ୍ମାରେ ନିମଗ୍ନ ରହିଣ    ଦେହ ବୁଦ୍ଧିକି ବିସର୍ଜିଣ,
ପଦ୍ମପତ୍ରେ ଜଳବତ୍,    ନ ହୋଇ କାହିଁରେ ଆସକ୍ତ,
ବାନପ୍ରସ୍ଥର ଧର୍ମ ପାଳି,    କା'ଠାରେ ନିର୍ଭର ନ କରି
ଦୃଢ଼ ସଂଯମେ ନିଜେ ରହି,    ନିଷ୍କାମ ଦ୍ୱନ୍ଦ୍ୱାତୀତ ହୋଇ
ଛାତ୍ରଛାତ୍ରୀଙ୍କି ଦେବେ ଶିକ୍ଷା,    ସମାଜ ସେବା ଯଜ୍ଞେ ଦୀକ୍ଷା ।
ସଞ୍ଚିବେ ନାହିଁ ଧନ ଅର୍ଥ,    ପାଳିବେ ଅସଂଗ୍ରହ ବ୍ରତ ।
'ଯଜ୍ଞାର୍ଥେ ଶରୀର ଧାରଣ',    ଏ ସତ୍ୟ କରୁଥିବେ ଧ୍ୟାନ ।
ସ୍ୱରାଜ୍ୟେ ଆତ୍ମାକୁ ନିବେଶି    ବେତନେ ନୋହିବେ ପ୍ରୟାସୀ ।
ଧନ ସମ୍ପଦ ବାଡ଼ି ବୃତ୍ତି    ଏଥେ ରଖିବେ ନାହିଁ ମତି ।
କୌପୀନ ମାତ୍ର ସାର କରି    କୁଟୀରେ ରହିବେକ ପଡ଼ି ।
ମାନାପମାନ ନିନ୍ଦାସ୍ତୁତି    ବାଧା ବିପଦ ଶୋକ ରୋଗ,
ଏଥିରେ ନୋହି ବିଚଳିତ    ଚଞ୍ଚଳ ନ କରିବେ ଚିତ୍ତ ।
୨ ଧରିବେ ରୁକ୍ଷ ବେଶ କେଶ    ଦେହ ବୁଦ୍ଧିକି କରି ଧ୍ୱଂସ;
ସ୍ୱାର୍ଥର କିଛି ଆଶା ଧରି    କାହାକୁ ନ କରିବେ ଅଳି ।
କାହାର ନୋହିବେ ଅଧୀନ    ଶୁଣିବେ ନାହିଁ କା ହୁକୁମ,
ସର୍କାର ଅବା ଜିଲ୍ଲାବୋର୍ଡ    କାହାର ନୋହିଣ କିଙ୍କର ।
ନ ଶୁଣି ନିର୍ଦ୍ଦେଶ କାହାର    ନିଜ ଇସ୍କୁଲ୍ ନିଜେ ଖୋଲି;
ଗୁରୁ ଶିକ୍ଷକ ଅଧ୍ୟାପକ    ଜାତିର ହେବେ ନିୟାମକ ।
ନିଜେ ଯେ ହୁଅଇ ସଚୋଟ    ଯୋଟିଇ ତାକୁ ବହୁ ଚାଟ,
ଆଜି ଯେ ଶିକ୍ଷକ ଅଛନ୍ତି    କିଙ୍କର ପରାଏ ଖଟନ୍ତି ।

---

୧ ଶିକ୍ଷକର ଆସନ ରାଜାର ଆସନ ଠାରୁ ଉଚ୍ଚତର ହେବା ଦରକାର । କାରଣ ରାଜାଙ୍କୁ ଶିକ୍ଷକ ହିଁ ତାଲିମ କରେ ।

୨ ଶିକ୍ଷକ ସର୍ବତ୍ୟାଗୀ ଯତି ବା ବାନପ୍ରସ୍ଥ ହେବା ବିଧେୟ ।




[ଗୁରୁ ଶିକ୍ଷକ ଅଧ୍ୟାପକ, ଅଟନ୍ତି ଜାତିର ସୃଜକ ।

× × ×

ସଦ୍ଧ ପଥରେ କଳବତ୍, ନ ହୋଇ କାହିଁ ରେ ଅସକ୍ତ,

× × ×

ବ୍ରତ ସଂଯମେ ନଜେ ରତ, ନଷ୍କାମ କ୍ଷମାଶୀଳ ହୋଇ ।
ବ୍ରହ୍ମଚାରୀଙ୍କି ଦେବେ ଶିକ୍ଷା, ସମାଜ ସେବା ଯଜ୍ଞେ ଦୀକ୍ଷା ।

ପୃ—୩୧

ଅବହେଳିତ ଅନାଦୃତ ସେ ଆଜି ଘୃଣିତ ଲାଞ୍ଛିତ,
ଅଳସ ଅପଦାର୍ଥ ବୋଲି ମନ୍ତ୍ରୀଏ ତାକୁ ଦ୍ୟନ୍ତି ଗାଳି ।
ସେ ଗାଳି ଖାଇ ମୂକ ପରି ପଡ଼ି ରହୁଛି ମୁହଁ ମାଡ଼ି,
ଶିକ୍ଷକ ଜାତିର ନାୟକ ଉଚ୍ଚକୋଟିର ସେ ସେବକ ।
ନିମ୍ନ ସେବକ ପରି ସେହୁ ସେବାକୁ ବନ୍ଦ୍ୟ କରଇ,

ଅର୍ଥ ଲୋଭରେ ଭୋଳ ହୋଇ   ମାସକୁ ମାସ ଟଙ୍କା ନେଇ
ଅମୂଲ୍ୟ ସେବାକୁ ତାହାର   କରଣି ଦିଅଇ ଅସାର ।
ଜ୍ଞାନୀଜନ କି ଜ୍ଞାନ ତାର   ଟଙ୍କାରେ କରଇ ତଉଲ ?
ଆଜି ଶିକ୍ଷକ ଜ୍ଞାନୀ ନୋହି   କାମିନୀ-କାଞ୍ଚନରେ ବାଇ,
ବନ୍ଧୁକ ଉଦସ୍ତରେ ପଡ଼ି,   ଲୁହାଇ ଅର୍ଥ ଧାଡ଼ି ଧାଡ଼ି,
ଘଣ୍ଟାକୁ ଚାହିଁ ରହୁଥାଏ,   ଘଣ୍ଟା ବାଜନ୍ତେ ପଳାଏ ।
ମାସର ଶେଷରେ ବେତନ   ପାଇଣ ଉଲ୍ଲସିତ ମନ
ଘରଣୀ ପାଶେ ଥୋଇଦେଇ   ତାହାର ମନକୁ କିଣଇ ।
ସୁତ କଳନ୍ତ୍ର ବନ୍ଧୁଘର   ଏମନ୍ତେ କହି ମୋର ମୋର
ସ୍ୱାର୍ଥକୁ ଚାହିଁ ଚାଲେ ପଥ,   ଦାଢ଼େ ନ ଛାଡ଼େ ନିଜ ସ୍ୱାର୍ଥ ।
ଶିକ୍ଷାଦାନକୁ କରି ଆଳ   ଅର୍ଥକୁ ଯେ କରଇ ମୂଳ,
ଉଚିତ ଏଥୁଁ ଅପସରି,   ଆନ ଜୀବିକା ଯିବା କରି ।
ସମ୍ବାଦପତ୍ର ପରି ହୋଇ   ଛାତ୍ରଙ୍କୁ ସମ୍ବାଦ ଯୋଗାଇ
ଶିକ୍ଷାଦାନର ଯେ ଛଳନା,   ସେ ଅଟେ ଆତ୍ମ ପ୍ରବଞ୍ଚନା ।
ତାହାର ନାମ ଶିକ୍ଷା କହି   ଭଣ୍ଡିବା ଉଚିତ ନୁହଁଇ ।
ଯେ ଶିକ୍ଷା-ବିଭାଗ ମାଲିକ,   * ମନ୍ତ୍ରୀ ବା ଅନ୍ୟାନ୍ୟ ଚାଳକ
ସେମାନେ ଆଦର୍ଶ ଶିକ୍ଷକ   ହୋଇ ରହିବା ଆବଶ୍ୟକ ।
ନ କରି ବେତନ ଗ୍ରହଣ   କରିଲେ ଜ୍ଞାନ ବିତରଣ,
ସଂଯମପଥେ ଦୃଢ଼େ ରହି   ବିଳାସେ ନ ହୋଇଲେ ବାଇ,
ଆନ ଶିକ୍ଷକ ଅଧ୍ୟାପକ   ଅନୁସରିବେ ଏହି ପଥ ।
ଜ୍ଞାନୀକ ଜ୍ଞାନ ବିତରିବ   ଶିକ୍ଷକ କିସ ପଢ଼ାଇବ,

---

* ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ବିଭାଗର କର୍ମକର୍ତ୍ତାମାନେ ନିଜେ ନିଜେ ଆଦର୍ଶ ଶିକ୍ଷକ ହୋଇ ରହିବା ଦରକାର ।

ଇସ୍କୁଲ କେତେ ଲମ୍ବ ହେବ     କେତେଟା ଚଉକି ରହିବ,
କି କି ବିଷୟ ପଢ଼ାଯିବ     କେଉଁ ଭାଷାରେ ପଢ଼ା ହେବ,
ଏ ଭ୍ରାନ୍ତ ନିର୍ଦ୍ଦେଶକୁ ଆଉ     ସର୍କାର କଦାପି ନ ଦେଉ ।
ରାଜ୍ୟର କରାନି ହାକିମ     ଅନ୍ୟାନ୍ୟ କର୍ମଚାରୀଗଣ,
ଏହାଙ୍କ ନିଯୁକ୍ତିର ପାଇଁ     ପରୀକ୍ଷା କରି ନେଉ ସେହି ।
ଶିକ୍ଷକ କାର୍ଯ୍ୟ ତଦାରଖ     ନ କରୁ କେ ପରିଦର୍ଶକ,
ଶିକ୍ଷକ ଯାହାକୁ ଲୋଡ଼ିବ,     ସେହି ତା କାମ ଦେଖିଯିବ,
ଆନରେ ନାହିଁ ପ୍ରୟୋଜନ     ଏଥେଁ ତୁଟିଇ ତା ସମ୍ମାନ,
ନିଜେହିଁ ନିଜର ମାଲିକ     ହୁଅନ୍ତୁ ଜାତିର ଶିକ୍ଷକ,
ଜାତିର ଦାୟିତ୍ୱକୁ ବୁଝେ     ଚଲାନ୍ତୁ ସଂଯମ ପଥରେ ।

୫ । ପ୍ରଶ୍ନ—ଛାତ୍ରମାନଙ୍କୁ ସଂଯତ ରଖି କୌଣସି ମୌଳିକ ଧନ୍ଦାରେ ନିଯୁକ୍ତ ରଖିବାଦ୍ୱାରା ତାହାର ଶିକ୍ଷା କିପରି ସଫଳ ହୁଏ ?

ବୋଲନ୍ତି ବୃହସ୍ପତି ଖେଦେ     ବିନାଥ ଗୋସାଇଁଙ୍କ ଆଗେ,
ମାନବେ ଅସୁରର ରୀତ     ଧରି ହୋଇଲେ ସ୍ୱାର୍ଥମତ ।
କ୍ଷମତା ଧନ ପଦଲୁବ୍ଧ     ଏଥିରେ ବଳାଇଲେ ଆଶ,
ପରସ୍ପରକୁ ହିଂସା କରି     କରନ୍ତି ନାନା ଦଳାଦଳି ।
ମୋତେ ସେ ବଳେ ଧରନେଇ     ଇସ୍କୁଲେ ମାଷ୍ଟର କରାଇ
ବୋଲନ୍ତି ପାଠ ପଢ଼ାଇବୁ     ଆମ ଛୁଅଙ୍କୁ କରି ବାବୁ ।
ମୋର କାର୍ଯ୍ୟକୁ ତଦାରଖ     ଆସି କରନ୍ତି ନିତ ମୂର୍ଖ,
ମୋର କାର୍ଯ୍ୟରେ ବାଧା ନିତ     ଆସି ସେମାନେ ଉପୁଜାନ୍ତି ।
ବୋଲନ୍ତି ପୁଅ ପଢୁ ନାହିଁ     * ମାଷ୍ଟରେ କିସ କରୁ ତୁହି ?

* ଶିକ୍ଷକର କାର୍ଯ୍ୟରେ ଗୁରିଆଁଡୁ ଅଯଥା ହସ୍ତକ୍ଷେପ କରାଯାଉଛି ।

ହକ ମୁଁ ପଇସା ଗଣୁଛି, କାହିଁ ମୋ ପୁଅ ନ ପଢୁଛି ?
ପରୀକ୍ଷା ଲମ୍ବର କମାଇ ପୁତୁର ରଖିଲା ମୋ ନାହିଁ
ସେ ପାଣଠୋକା କାହିଁ ପାଇଁ ଝୁଅକୁ ମୋର ଦେଲା ଝୁଙ୍କି ?
ପୁଅ ମୋ ପଳାଇଲା କାହିଁ ମାଷ୍ଟରେ କସ କରୁ ରହି ?
କଏ ମୋ ପୁଅର ବସ୍ତାନି ଗ୍ରେଡ଼ କରଣି ନେଲା ପୁଣି ?
କଣ୍ଣାକଙ୍କର ପର ନିତ ମୂଢେ ମୋଠାରେ ଅଚରନ୍ତି,
ଅସିଣ ଦେ ପରଦର୍ଶକ କରେ ମୋ କାର୍ଯ୍ୟ ତଦାରଖ ।
ଅସୁରବେଶ ପିନ୍ଧି ଆସି ଛଇରେ କଥା କହେ ରୋଷି ।
କେବଳ ଦୋଷକୁ ବାଛଇ ଗୁଣ ତାହାକୁ ନ ଦିଶଇ ।
ସ୍ଥୂଳ ଏ ମର କଲେବର ଅମର ଆତ୍ମାର ମନ୍ଦର,
ଏ ତତ୍ତ୍ୱ ବୁଝିବାକୁ ଯିନା, * ପାଠ ପଢିବା ଲକ୍ଷ୍ୟ ଘେନା ।
କଏ ମୁଁ ଅସିଛି କେଉଁଠୁଁ, ଯିବ ପୁଣି ମୁଁ କେଉଁଠାକୁ,
ଏ ଶରୀରେ ସଙ୍ଗତର କାସ ସମ୍ପର୍କ ଅଛି ମୋର,
ଏ ସତ୍ୟ ଯିନା ସମଝିଲେ ସାର୍ଥକ ଶିକ୍ଷା ହୁଏ ଭଲେ;
ଏହାକୁ ସମଝିବା ପାଇଁ ସଂଯମ ଅଗ ଲୋଡ଼ା ହୋଇ ।
ଦେହରେ ହୋଇଲେ ଅସକ୍ତ ଦେହକୁ ଆତ୍ମା ମଣେ ଭ୍ରାନ୍ତ ।
ଦେହ ବୁଦ୍ଧିକି କର ନାଶ, ଧରଇ ସେହୁ ରୁକ୍ଷ ବେଶ,
ଭସ୍ମ ବାଲେପି କଲେବରେ ଦେହ ବର୍ଣ୍ଣକୁ ଲୋପ କରେ
ଜଟାଜୁଟ ବେଶ ହୋଇ ମୁଖର ଶୋଭାକୁ ନାଶଇ,
କୌପୀନ ମାଏ ସାର କର, ରୁହେ ସେ ଅକାଞ୍ଚନ ପର,
ଇନ୍ଦ୍ରିୟଗଣେ ରୋଧକର, ନିସଙ୍ଗ ରହି ଜଡ଼ ପର,
ଗୁରୁ ସେବାରେ ହୋଇ ଭୋଳ ଆତ୍ମ ଚିନ୍ତାରେ କାଟେ କାଳ ।

---

* ଶିକ୍ଷାର ଲକ୍ଷ୍ୟ ଓ ସାଧନପ୍ରଣାଳୀ ମଧ୍ୟରେ ଘୋର ଭେଦ ରହିଛି ।

ସେହି ଭିତରମୁହାଁ ହୁଏ, ଗୁରୁ କୃପାରେ ସତ୍ୟ ପାଏ ।
ଅନ୍ଦର କଲେ ବାହାରକୁ କେ ପଶିପାରେ ଭିତରକୁ ?
ଦେହ ବୁଦ୍ଧିରେ ଦେଇ ମନ ଦେହକୁ କଲେ ଶୋଭିବନ,
ଲମ୍ବପଣତ ହୀନବାସ ଏଥିର ଭକ୍ତ ହେଲେ ଶିଷ୍ୟ
ଅହଂକାରରେ ଅନ୍ଧ ହୋଇ ଦେହକୁ ଭାବେ ମୋର ମୁହିଁ ।
ଇନ୍ଦ୍ରିୟ ପ୍ରଲୋଭନେ ପଡ଼ି ଖୋଜଇ ସେ ଜାଙ୍କର ପରି ।
ଦର୍ପଣେ ଦେଖି ମୁଖ ତାର ଭାବେ ମୁଁ ଦିଶେ କି ସୁନ୍ଦର !
ସଂସାରେ ମୋହଠାରୁ କେହି ସୁନ୍ଦର ୧ ଆଉ ଥିବେ ନାହିଁ,
ସରବେ ମୋର ରୂପ ଦେଖି କନ୍ଦର୍ପାନଳେ ଘାରି ହୋନ୍ତି ।
ସର୍ବେ ମୋ ଆଖିକି ଦିଶନ୍ତି କୁତ୍ସିତ କଦାକାର ଅତି,
ଏ ବିଶ୍ୱସଂସାରରେ କେହି ମୋହର ଲାଖି ନ ମିଳଇ,
କୋଟି କନ୍ଦର୍ପ ଜିଣି ରୂପ ଆହା ମୁଁ ଦିଶଇ କେମନ୍ତ;
ଏମନ୍ତେ ନିଜେ ନିଜ ରୂପ ଦେଖି ହୁଅଇ ଚମତ୍କୃତ ।
ଇନ୍ଦ୍ରିୟମଦେ ଅନ୍ଧ ହୋଇ ନିଜେ ସେ ନିଜକୁ ରମଇ ।
ଜିହ୍ୱାର ଆସ୍ୱାଦନ ପାଇଁ ଚର୍ବ୍ୟ ଚୋଷ୍ୟରେ ହୁଏ ବାଇ ।
ନିଦ୍ରା ଆଳସ୍ୟେ ମତ୍ତ ହୋଇ ଅଧିକ ବେଳ ରହେ ଶୋଇ ।
ପରିଦର୍ଶକ ଆସି କେହି ଏଥିରେ ମଥା ନ ଦିଅଇ ।
୨ ଗମ୍ଭୀର ବଳ ରୂପକଥା ନ ବୁଝେ ତାର ସୂକ୍ଷ୍ମମଥା ।
ପାଠ୍ୟ ନିର୍ଦ୍ଦିଷ୍ଟ ଉପସ୍ଥାନ ରଚନା ପଦର ଲିଖନ
ଏ ସବୁ କଥା ଦେଖେ ସେହି ବାଜେ କଥା ସେ ନ ଜାଣଇ,

---

୧ ଛାତ୍ରମାନଙ୍କ ବିକୃତ ଆତ୍ମପ୍ରଣୟ ବଢ଼ିବାରେ ଲାଗିଛି ।

୨ ହସ୍ତ, ମସ୍ତିଷ୍କ ଓ ହୃଦୟର ସମନ୍ୱୟ ରକ୍ଷାହିଁ ପ୍ରକୃତ ଶିକ୍ଷା ଅଟେ ।

ଶ୍ରେଣୀକି ଶ୍ରେଣୀ ବୁଲିଯାଇ ପଚ୍ଛରେ ପ୍ରଶ୍ନ ଗୋଟା ହୁଇ ।
ବୋଲଇ ଉତ୍ତର ଗ୍ରନ୍ଥଙ୍କ ନୋହିଲା ସନ୍ତୋଷଜନକ ।
ଗ୍ରନ୍ଥଙ୍କ ରଚନାର ଖାତା ଦେଖି କହଇ ଶେଷେ କଥା,
ରଚନା ଦୋଷ ଉତ୍ତମରେ ଦେଖାଇ ନାହିଁ ହେ ମାଷ୍ଟରେ ।
ଲିଖନ ପଠନ କଥନ ଏ ତିନିକଥା ଯେତେ ଧନ,
ପାଠ ଭାଲିକା ଥିବ ହୋଇ ସେତିକି ଧନ ଯାଏ କେହି
ଶିକ୍ଷାର ଲକ୍ଷ୍ୟ ନ ବୁଝିବେ ସଂଯମ କଥାରେ ହସିବେ ।
ଛୁଆଙ୍କଠାରୁ ଶୁଆଗିରି ଦେଖି ସନ୍ତୋଷ ହେବେ ଖାଲି ।
କେବଳ ବହିକୁ ଘୋଷାଇ ପରୀକ୍ଷା କୃତିତ୍ୱ ଦେଖାଇ
ଗ୍ରୀକର ଯୋଗ୍ୟ କରିଦେବା, ଏହାହିଁ ଶିକ୍ଷାର ଫାଇଦା ।
ହସ୍ତ ମସ୍ତିଷ୍କ ସେ ହୃଦୟ ଏହି ତିନିଙ୍କ ସମନ୍ୱୟ,
ଏହାକୁ ଶିକ୍ଷା ବୋଲି କହି, ନୋହିଲେ ଚପୁଳିଟା ସେହି ।
ଦେହକୁ ଶ୍ରମରେ ଖଟାଇ କଠିନ ଶଯ୍ୟାରେ ଶୁଆଇ
ଦେହକୁ ଲିଖୁରି ରଖାଇ ସଂଯମ ପଥରେ ଚଳାଇ
ଗୁରୁ ସେ ସଦା ଚେତ ରହି ଶିଷ୍ୟର ହୃଦକୁ ଜଗଇ ।
ଜେବେହି ଭାର ହାତ ଯାଇ, ଶ୍ରମବିମୁଖ ନ ହୁଅଇ ।
ଜେବେହି ଯାଇ ସେ ଗ୍ରନ୍ଥର ଭ୍ରମ ନ ଘଟେ ମସ୍ତିଷ୍କର ।
* ଏଣୁ ପ୍ରଥମେ ଭାଗବତ ପଛେ ଭୂଗୋଳ ଅବା ଅଙ୍କ ।
ଘୋଷାଇ ଭାଗବତ ଆଗ ଗୁରୁ ଚପଇ ଗ୍ରନ୍ଥହୃଦ,
ନାନାଦି ଧନ୍ଦାରେ ମତାଇ, ରଖଇ ଗ୍ରନ୍ଥଙ୍କୁ ଖଟାଇ ।
ଭିକ୍ଷା ଗୋସେବା କାଠକଟା, ଗ୍ରୃହବେଢ଼ସା ସୂତାକଟା

* ଉତ୍ପାଦକ ଶରୀର ଶ୍ରମରେ ଛାତ୍ରର ହସ୍ତକୁ ଖଟାଇ ତାହାର ହୃଦୟକୁ ତୀକ୍ଷ୍ଣଦୃଷ୍ଟିରେ ଜଗିରହିବା ଦ୍ୱାରାହିଁ ଶିକ୍ଷା ସଫଳ ହୁଏ ।

ଏ ଅବ୍ଧ କର୍ମେ ସବୁ ଛାତ୍ର, | ଖଟି ରହିବେ ଦିନଯାକ ।
ଏହି ଧନ୍ଦାରୁ ଶିଖିବେକ | ଭୂଗୋଳ ଇତିହାସ ଅଙ୍କ
ଆନ ଭୂଗୋଳ ଇତିହାସ, | ଛାତ୍ର ନ ଯିବେ ତାର ପାଶ ।
ସନ୍ଧ୍ୟା ହେବାରୁ ସବୁ ଶିଷ୍ୟ | ଅସି ମିଳିବେ ଗୁରୁପାଶେ
ଭଗବତର ପାରାୟଣ | ହୋଇବ ତହିଁ କିଛୁକ୍ଷଣ ।
ଦିନ ଧନ୍ଦାର ସମାସ୍ଥିର | ଅଥବା ସମସ୍ୟା ବିସ୍ତର
ଏ ସବୁ ତହିଁକାଳେ ପଡ଼ିବ | ଗୁରୁଙ୍କ ସାହାଯ୍ୟ ମିଳିବ ।
ସଂଯମେ ଛାତ୍ରଙ୍କୁ ରଖାଇ | ଶରୀର ଶ୍ରମରେ ଖଟାଇ
ଶରୀର ଅହଂକାର ସଙ୍ଗ | କଠୋର ତପେ ପୋଡ଼ାଇବ
ରୂପ, ରସ ଯେ ଗନ୍ଧ, ସ୍ପର୍ଶ, | ଶବ୍ଦ ଏ ପାଞ୍ଚମାତ୍ରା ବିଷ
ଏ ପାଞ୍ଚ ବିଷୟରୁ ଦୂରେ, | ଶିଷ୍ୟଙ୍କୁ ଜଗିଥିବ ଗାଢ଼େ ।
ଏଗାର ବର୍ଷ ଏହିପରି | ଛାତ୍ରଙ୍କୁ ଜଗିବ ସମ୍ଭାଳି ।
ଅଠର ବରଷ ବୟସ | ଛାତ୍ରର ହୋଇଲାରୁ ଶେଷ
ତା ଗୁଣ କର୍ମକୁ ପରଖି | ଜୀବିକା ବାଛିବ ତା ଲାଗି ।
ସେହି ଜୀବିକା ଶିଖିବାକୁ | ଯିବ ସେ ଅନ ଗୁରୁଠାକୁ ।

X X X

* ଜନ୍ମରୁ ବୟସ ଅଠର | ଏ ଯାଏ ସାଂଘାତିକ କାଳ ।
ଦେବ ଦାନବ ସାଧୁ ଚୋର | ପାପୀ ପୁଣ୍ୟାତ୍ମା ତ୍ୟାଗୀ ଖଳ
ଏହି ବୟସେ ହୋନ୍ତି ଜାତ, | ଏଣୁ ଏ କାଳଟି ସଙ୍କଟ ।
ସେଣୁ ଏ ସଙ୍କଟର କାଳ, | ଗୁରୁ ରହିବେ ଚେତୁଆଳ ।
ଭୂଗୋଳ ଅଙ୍କ ଇତିହାସ | ନ ଯାଇ ଏହାଙ୍କର ପାଶ
ଛାତ୍ରଙ୍କୁ ରଖିଣ ଖଟାଇ | ଦେହକୁ ଦେଇଣ ଶୁଖାଇ

* ପ୍ରାଥମିକ ଶିକ୍ଷାର ପ୍ରଣାଳୀ ।

ଅହଂକାରକୁ ବିନାଶିବେ ଶିଷ୍ଟ ହୃଦକୁ ଜଟିଥିବେ ।
ନାନା ବିଷୟେ ଶିଷ୍ଟମୁଣ୍ଡ କରିବେ ନାହିଁ ଲଣ୍ଡଭଣ୍ଡ ।
ଏଗାର ବୟସର ଯାଏ ୧ ପ୍ରଖର ସ୍ମୃତି ରହିଥାଏ ।
ଏକାଳେ ଶିଷ୍ଟ ଯାହା ଶୁଣେ, ଚିରକାଳ ତା ରଖେ ମନେ ।
ଶ୍ରବଣ ଇନ୍ଦ୍ର ସ୍ମର ଶକ୍ତି ଏକାଳେ ହୁଏ ତୀକ୍ଷ୍ଣ ଅତି ।
ଯା ଅସି ବାଜେ ଶ୍ରୁତିପଟେ ସଦା ରହେ ତା ଚିତ୍ତପଟେ,
ଯା ଅସି ପଶେ ଶିଷ୍ଟକାନେ ଶୁଣି ଶୁଣି ତା ରଖେ ମନେ ।
ଏଣୁ ଏ ଅପୂର୍ବ ଶକ୍ତିକି କାର୍ଯ୍ୟେ ଲଗାଇ ଗୁରୁ ନୀତି :
କରିବେ ଉପଯୋଗ ତାର, ହେବ କଲ୍ୟାଣ ସମାଜର ।
ସତ୍ୟ ସୁନ୍ଦର ଶିବ ବାଣୀ, ଏହା ଅମୃତମୟ ଜାଣି
ଲଳିତସ୍ୱନେ ଗାଇ ଗାଇ ଶିଷ୍ଟଙ୍କୁ ଯତନେ ଶିଖାଇ
କଣ୍ଠସ୍ଥ କରାଇବ ତାହା, ଭବିଷ୍ୟେ ଦେଖାଇବ ସ୍ପୃହା ।
ବିସ୍ତର ବୁଦ୍ଧି ହେତୁବୋଧ ଶିଷ୍ଟର ଯେବେ ଜାତ ହେବ,
ବୁଦ୍ଧିଭେଦର ଏହି କାଳ, ନାନା ସନ୍ଦେହ ହୁଏ ମେଳ ।
କାମ କ୍ରୋଧର ଘଟି ବେଗ ଚିତ୍ତରେ ଆଣଇ ଆବେଗ ।
କ୍ଷଣେ କ୍ଷଣକେ ମୋହେ ପଡ଼େ କ୍ଷଣେ କ୍ଷଣକେ ସ୍ମୃତି ହୁଡ଼େ ।
ତା ହୃଦପଟେ ଏ ସମୟେ, ସଞ୍ଚିତ ଯେଉଁ ଭାବ ଥାଏ
ସେହି ସଚ୍ଚିଦାନନ୍ଦ ଭାବ ତା ମନେ ଆଣଇ ପ୍ରବୋଧ ।
ସଦ୍‌ଜ୍ଞାନୀ ଶିକ୍ଷକ ଏକାଳେ ଶିଷ୍ଟଙ୍କୁ ଜଟିଥିବେ ଗାଢ଼େ ।
କିଶୋର ବୟସ ଶିଷ୍ଟର ୨ ବିସ୍ତର ବୁଦ୍ଧି ତୀକ୍ଷ୍ଣତାର ।
ଏହି ବିସ୍ତରଶକ୍ତି ଯୋଗେ ଶିଷ୍ଟର ସଂଶୟ ନାଶିବେ ।

---

(୧) ସ୍ମୃତିଶକ୍ତିର ଉପଯୋଗ ।
(୨) ବିସ୍ତରବୁଦ୍ଧିର ବିକାଶ କାଳ ତେର୍‌ଦବର୍ଷ ବୟସରୁ ଆରମ୍ଭ ହୁଏ ।

ଇନ୍ଦ୍ରିୟେ ଏକାଳେ ଦୁର୍ଦ୍ଧାନ୍ତ ଗୃହର ହୋଏ ଅଶାନ୍ତ୍ତ,
ଗୁରୁ ନୋହଣ ବଚଳିତ ତ୍ରୁଟେ ଲଭିବେ ଛାତ୍ରଗଣ ।
ନାଟ ତାମସା ବାଦ୍ୟଗୀତ ସିନେମା ସର୍କସ ନାଟକ
ଏ ସବୁ ନ ଦେଖିବେ ଗୃହେ ଏଥିରେ ବୁଦ୍ଧିଭେଦ ଘଟେ ।
ରମଣୀ କଣ୍ଠସ୍ୱର ଗୀତ ଶୁଣିବେ ନାହିଁ କେହୁ ଗୃହ ।
ରମଣୀରଚ ଅବା ରୂପ, ନାରୀଙ୍କ ଧାପ ଅବା ମୁଖ,
ଏଥେଁ ଛାତ୍ରର ଆଖି କେବେ ଗୁରୁ ଯେ ପକାଇ ନ ଦେବେ ।
ରମଣୀ ସଙ୍ଗେ କଥାକାଳେ, ମୁଖକୁ ନ ଚକାଇ ଭୋଳେ
ପାଦକୁ ରହିଥିବ ଗୃହିଁ * ମାଅ ବୋଲିଣ ଡ଼ାକଦେଇ ।
ନିଜର ଅଜା ବାପ ଭାଇ ଯଦ୍ୟପି ଅସିଥିବେ କେହୁ,
ତଥାପି ବ୍ରହ୍ମଚାରୀ କେବେ ଏକ ଶଯ୍ୟାରେ ନ ଶୋଇବେ ।
ତୃଣର କଠିନ ଶଯ୍ୟାରେ ନିଦ୍ରା ଯିବ ସେ ଆନନ୍ଦରେ ।
ଅଧିକ ରାତିରେ ଶୟନ ଅବା ବଳମ୍ବେ ଜାଗରଣ
କରିବେ ନାହିଁ ଛାତ୍ରଗଣ ଏଥେଁ ଘଟଇ ମତିଭ୍ରମ ।
ରଙ୍ଗ ରହସ୍ୟ ଅଟ୍ଟହାସ ବୃଥା ବିତଣ୍ଡା ପରିହାସ
ଅଭିନୟାଦ ନୃତ୍ୟଗୀତ ଏଥେଁ ମାତିବେ ନାହିଁ ଗୃହ ।
କେଶବିନ୍ୟାସ ପରିପାଟି ଏଥେଁ ନ ଦେବେ କେବେ ମତି ।
ଗୁରୁ ଏହାକୁ ପାଳି ନିଜେ ଗୃହଙ୍କୁ ପଥ ଦେଖାଇବେ ।
ଶିକ୍ଷକ ନିଜେ ଛାତ୍ର ହୋଇ ସାଧିବେ ଛାତ୍ରର ଭଲାଇ ।
ସଂଯମେ ନିଜେ ଯେହୁ ରହେ ସେ ଆନେ ସଂଯତ କରାଏ ।
ଶରୀର ଶ୍ରମ ଶାନ୍ତି ପାଠ ଯେଣୁ ବତାଏ ଠିକ ବାଟ ।
ଅଜ୍ ଯେତେକ ସବୁ ଶାଠ, ଶିଖାଏ ନାନା ଛନ୍ଦକୂଟ ।

* ଛାତ୍ରଜୀବନର ବିଧି ନିଷେଧ ।

* ଶ୍ରମିକ ଯେଉଁ ଶ୍ରମ କରେ    ମୂଲ୍ ଲଗିଣ ଧନ ହରେ,
କଳା, କଳ୍ପନା ତହିଁ ନାହିଁ,    ଅଜ୍ଞାନେ ସେ ତାହା କରଇ ।
ଯୋଗ ସାଧିବା ଅଭିଳାଷେ    ଜ୍ଞାନର ଅହରଣ ଅଶେ
ଛାତ୍ର ଯେ ଶ୍ରମକୁ ସାଧିବ    କଳ୍ପନା ତହିଁ ଖଟାଇବ ।
ତହିଁ କରିବ ଆବିଷ୍କାର    ଜୀବନ କର୍ମର କୌଶଳ ।
କର୍ମ କୌଶଳ ଯେ ଜାଣଇ    ତାହାକୁ ଯୋଗୀ ବୋଲି କହି ।
ଶୀତୋଷ୍ଣ ସୁଖ ଦୁଃଖ ତାପ    ଏଥେଁ ନୁହଇ ବିଚଳିତ ।
ସମ୍ପଦ ଅଥବା ବିପଦ    ନିନ୍ଦା ପ୍ରଶଂସା ଶୋକ ବେଗ
ଏଥେଁ ରହଇ ସ୍ଥିରଚିତ୍ତେ    ଯୋଗୀହିଁ ସୁଖୀ ଏ ଜଗତେ ।
କର୍ମ କୌଶଳେ ଯେହୁ ମୂଢ଼,    ଘୋର ଦୁଃଖେ ସେ କାଟେ କାଳ,
ପ୍ରଥମ ଶିକ୍ଷା ଏହୁପରି    ଏହାକୁ ପ୍ରବେଶିକା ବୋଲି ।
ଗୁରୁ ଆଜ୍ଞାକୁ ଧରି ଶିରେ    ଯେ ଛାତ୍ର ଶିକ୍ଷା ଶେଷ କରେ
ମଥାରେ ପୂରାଇବ ଯାହା    ରଖିପାରିବ ନିଷ୍ଠେ ତାହା ।
ଯହିଁରେ ହାତ ଦେବ ଛାତ୍ର,    ତହିଁରେ ହେବ ସମରଥ ।
ପରଦର୍ଶକ ବାବୁମାନେ    ଏହା ନ ବୁଝି ଥିରମନେ
ଅନ୍ଧାରେ ବାଡ଼ି କସୁଛନ୍ତି    ମୋ ଦୋଷ ଖାଲି ଗାଉଛନ୍ତି ।

୭ । ପ୍ରଶ୍ନ—ଆରୁଣି ଗୁରୁଗୃହରେ ରହି କପରି ନିଜକୁ ତାଲିମ କରିଥିଲା ?

ବୋଲନ୍ତି ବୃହସ୍ପତି ଶୁଣ    ହିନାଥେ ଅମର ଗଣାଣ ।
ଆରୁଣି ବୋଲି ଏକ ଛାତ୍ର    ଗଲାକ ପଢ଼ିବାକୁ ପାଠ ।
ଗୁରୁଗୃହରେ ପ୍ରବେଶିଲା    ଗୁରୁଙ୍କୁ ଓଳଗି ହୋଇଲା ।

* ଅଜ୍ଞ ଶ୍ରମିକ ଓ ବିଜ୍ଞ ଛାତ୍ରର ଶରୀରଶ୍ରମ ମଧ୍ୟରେ ପାର୍ଥକ୍ୟ ।

ସାତବର୍ଷର ପିଲା ସେଇ ଅସିଛୁ ନୂଆ ବୃତ ହୋଇ ।
ବ୍ରାହ୍ମମୁହୂର୍ତ୍ତେ ଉଠି ସେଇ ଗୁରୁଙ୍କୁ ପ୍ରଣାମ କରଇ;
ଗୁରୁପତ୍ନୀଙ୍କି ମାତା ପରି ଭକତି ସଦା ଥାଏ କରି ।
ସହପାଠୀଙ୍କ ସଙ୍ଗ ହୋଇ ପିଣ୍ଡା ଅଗଣା ଦେଇ ଓଳାଇ
ଗାଈ ଗୁହାଳ ସଫା କରେ, ତେଲ ନ ମାଖି ସ୍ନାନ ସାରେ ।।
ଗୁରୁଙ୍କ ଆଦେଶରେ ସେଇ ଋଷି ବେଶରେ ରହିଥାଇ ।
ସେଠାରେ ଥାନ୍ତି ଯେତେ ଛାତ୍ର ରାନ୍ଧନ୍ତି ପାଳକରି ଭାତ ।
ଅଲଣା ଅବଧରି କରି ରାନ୍ଧନ୍ତି ସେହୁ ତରକାରି ।
ସେହି ଦେଶର ଯେଉଁ ରାଜା ପାଳେ ସେ ପୁତ୍ରପରି ପ୍ରଜା,
ମାଣ ପାଞ୍ଚେକ ବାଲିବାଡ଼ି ଛାତ୍ରଙ୍କ ଲାଗି ଦେଲା ଛାଡ଼ି,
କଦଳୀ ସାରୁ ଧାନ ଆଦି ତହିଁରେ ହୁଅଇ ଅବାଧି ।
କେ ସୂତା କାଟେ, ଅବା କେହି କୋଡ଼ି ଧରଣି ହାଣେ ଯାଇ ।।
କେ ଯାଇ ଅବା ଋଷକ୍ଷେତେ ପକ୍ଷିଅମୁଣ୍ଡେ ବାଲି ବାଛେ,
ଗୁରୁ ଯେ ଗୁରୁପତ୍ନୀ ସଦା ଛାତ୍ରଙ୍କୁ ଶିଖାନ୍ତି ଏ ଧନ୍ଦା ।
ଗାଈ ଗୋରୁଙ୍କୁ ଧରି କେହି ବନକୁ ନିଅଇ ଚରାଇ ।
ଅପରେ ଧରି ଭିକମୁଣି ବରଡ଼ା ଛତା କରେ ଦେଖି,.
ଗ୍ରାମ ନଗର ରାସ୍ତାଦାଣ୍ଡେ ବୋଲଣି ଭାଗବତ ତୁଣ୍ଡେ
ଗୁରୁଙ୍କ ପାଇଁ ଭିକ୍ଷା କରି ଗୁରୁଗୃହକୁ ଯା'ନ୍ତି ଫେରି ।
ସନ୍ଧ୍ୟା ହୁଅନ୍ତେ ସର୍ବେ ପୁଣି ଗୁରୁଙ୍କ ପାଦରେ ପ୍ରଣମି
ଖଟଣି ହିସାବ ଡ଼ାଏରି ଦେଖାନ୍ତି ଗୁରୁପାଶେ ଧରି ।।
ଭିକ୍ଷା ମହତ୍ତ୍ୱ ଧନ୍ଦାଗୁଣ ଗୁରୁ ବୁଝାନ୍ତି ପୁଣ ପୁଣ ।
ଭିକ୍ଷାରେ ତୁଟେ ଅହଂକାର ବିନୟ ହୁଅଇ ସଞ୍ଚାର ।
ସଞ୍ଚୟ ମନୋବୃତ୍ତି ଯାଇ, ସେବାର ଭାବ ପ୍ରକଟଇ ।
ଶ୍ରମ ଯେ ଜାଗ୍ରତ ପ୍ରହରୀ କାମ କ୍ରୋଧକୁ ଦିଏ ଦଳି;

ସଦ୍‌ଗ୍ରନ୍ଥମାନେ ଶ୍ରମ କରେ ଯେହୁ    ଦିବ୍ୟ ଶକତି ଲଭେ ତହୁଁ ।
ଏରୂପେ ଗୁରୁ ଯେ ଭାଷନ୍ତି    ଶିଷ୍ୟେ ତା ଭକ୍ତିରେ ଶୁଣନ୍ତି ।
ଧନାର ସମସ୍ୟା ଯେତେକ    ଘଟିଣ ଥାଏ ଦିନଯାକ
ତାହାର ସମାଧାନ ବାଟ    ଗୁରୁଙ୍କ ଠାରୁ ଶିଖେ ଗ୍ରନ୍ଥ ।
ଭାଗବତର ପଦମାନ    ହୁଅଇ ତହୁଁ ପାରାୟଣ,
ମାନବ ଜୀବନରେ ଯହୁଁ    ଜଟିଳ ସମସ୍ୟା ଘଟଇ
ତାହାର ସମାଧାନ ପଥ    କୁହେ କୋରାନ ଭାଗବତ ।
ଉପନିଷଦ ଗୀତାଗ୍ରନ୍ଥ    ରହିଛି ଏଥେଁ ସାର ସତ୍ୟ ।
ଗୁରୁ ଯେ ସେସବୁ ବୁଝାନ୍ତି    ଗ୍ରନ୍ଥେ ତା ଧ୍ୟାନେ ଶୁଣନ୍ତି,
ଗୁରୁ ଯାହାଟି ଦିଏ ଆଜ୍ଞା    ତାକୁ କେ ନ କରେ ଅବଜ୍ଞା ।
ଇନ୍ଦ୍ରିୟମାନେ ଅବିରତ    ଗୁରୁ ସେବାରେ ଥାନ୍ତି ରତ ।
ଆପଣା ସ୍ୱାର୍ଥ ଛାଡ଼ି ଦେଇ    ଗୁରୁଙ୍କ ପାଦେ ମନଦେଇ
କଠିନ ଶଯ୍ୟାରେ ଶୁଅନ୍ତି    ସ୍ୱାଦର ଦ୍ରବ୍ୟ ବରଜନ୍ତି ।
ଗନ୍ଧ ଚନ୍ଦନ ପୁଷ୍ପମାଳ    ଗୁରୁଙ୍କୁ କରଣ ଅର୍ପଣ,
ଜଟା ବକଳ ଧରି ସୁଖେ    ସଂଯମେ ଥାନ୍ତି ଅବିରତେ ।
ଏମନ୍ତେ ଗୁରୁ ଆଦେଶକୁ    ମାନି ଜଗନ୍ତି ହୃଦୟକୁ ।
ଏ ଶିକ୍ଷା ଯେବେ ଠିକେ ଥାଇ    ମଥା ବେଠିକ ହୁଏ ନାହିଁ ।
ଏମନ୍ତେ କେତେଦିନ ଯାଇ,    ଆରୁଣି ଗୁରୁଗୃହେ ଥାଇ,
ଗୁରୁ ଆଜ୍ଞାକୁ ଥାଏ ପାଳି    ଶରୀର ଶ୍ରମ ଯାଏ କରି ।
ବାର ବରଷ ତା ବୟସ    ହୋଇଲା ଏ ରୂପରେ ଶେଷ,
ଅନେକ ଶ୍ରାବଣର ମାସେ    ମୁଷଳ ଧାରାରେ ବରଷେ ।
ଗୁରୁ ଯେ ମନେ ବିଚାରିଲେ    ଗ୍ରନ୍ଥଙ୍କୁ ପରଖିବା ଭଲେ;
ଆରୁଣି ବୋଲି ଯେଉଁ ଗ୍ରନ୍ଥ    ଆଗ ହୋଇବ ତା ପରଖ ।
ଗୁରୁ ବୋଇଲେ ରେ ଆରୁଣି    ବିଲରେ ଯାଇ ମଡ଼ା ପାଣି ।

ଘଳଅ ପଡ଼ ପାଣି ଯାଏ ବାଲେ ମୋ ପାଣି ଯେ ନ ରହେ ।
ଶୁଣିଣ ଗୁରୁଙ୍କର ବାଣୀ ବାଲକୁ ଗଲକ ଅରୁଣି ।
ଦେଖିଲ ଘଳଅ ଗୋଟିଏ ପାଣି ବାହାର ଚ୍ଛଲୁଯାଏ ।
ବୟସ ବାର ସେ ବାଳୁତ ଦେଖ ତ ତାହାର ହେମତ ।
ରୋକ ନ ପାର ସେ ଘଳଅ ଶୋଇ ପଡ଼ଲ ତହିଁ ଛୁଅ ।
ଗୁରୁଙ୍କ ବାଲରେ ଯେ ପାଣି ରହିଣ ଗଲ ତତକ୍ଷଣି ।
ଏରୂପେ ପଡ଼ି ରହ ତହିଁ ଗୁରୁଗୃହକୁ ନ ଫେରଲ ।
ସନ୍ଧ୍ୟାରେ ଘରେ ଡ଼ାକେ ଗୁରୁ ଅରେ ଅରୁଣି କେଣେ ଗଲ,
ତୁହାଇ ତୁହାଇ ଡ଼ାକନ୍ତ ଖୋଜ ତାହାକୁ ନ ପାଅନ୍ତ ।
ବତା ଧରଣ ବାଲଅଡ଼େ ଗୁରୁ ଚଳଲେ ତଡ଼ବଡ଼େ;
ଦେଖିଲେ ପୁଅ ଅଛୁ ପଡ଼ ଘଳଅ ମୁହଁକୁ ଜାବଡ଼ ।
ବୋଇଲେ ଉଠିଆସ ତୁହ ପାଣିରେ ଆଉ କାର୍ଯ୍ୟ ନାହିଁ ।
ଅରୁଣି ଉଠି ସେ ଆସିଲ ଗୁରୁଙ୍କ ଆଗେ ଜଡ଼ା ହେଲ ।
ଗୁରୁ ତା ମୁଣ୍ଡେ ମାର ହାତ ଆଶିଷ କଲେକ ବହୁତ ।
ବୋଇଲେ ଶୁଣ ଅରେ ବାବୁ ଶେଷ କରୁଛୁ ପାଠ ସବୁ ।
ମୋଠାରେ ଆଉ ଲୋଡ଼ା ନାହିଁ ଆନ ଗୁରୁକୁ ଧର ତୁହି ।
ଏବେଠି ହାତ ଦେବୁ ଯହିଁ ସଫଳ ହେବୁ ନିଶ୍ଚେ ତହିଁ ।
ଏବେ ଯହିଁରେ ଦେବୁ ମଥା ତହିଁ ତୁ ହେବୁ ସମରଥା ।
ପୁରାଣ, ଗଣିତ, ଜ୍ୟୋତିଷ ଅବର କାବ୍ୟ ଇତିହାସ
ଶିଳ୍ପ ବିଜ୍ଞାନ, ବୈଦ୍ୟଟିର କାହିଁରେ ନ ଯିବୁ ତୁ ହାର,
ଯେଣୁଟି ବାବୁ ତୋର ଶକ୍ତି ତୁଛ ନାହିଁ ଯେ ଠିକ ପଥ ।
ଅହାକୁ ଶର୍ଦ୍ଧିବା ଉପାୟ ଯେଣୁ ଜାଣିଛୁ ତୋ ହୃଦୟ ।
ତୋ ଗୁଣ ପରଖିବ ବୋଲ ବାଲକୁ ପଠାଇ ମୁଁ ଥିଲ ।
ଏ ପରୀକ୍ଷାରେ ତୁ ସଫଳ ହୋଇଲୁ ଅଛୁରେ କୁମର ।



*[ଶୁଣିଣ ଗୁରୁଙ୍କର ବାଣୀ,   ଚଳନ୍ତୁ ସନ୍ଧ୍ୟ ଅବୁଝି,
ଦେଖିଲୁ ଘଣ୍ଟଣ ଗୋଟିଏ,   ପାଣି ବାହାରୁ ଚାଲିଯାଏ ।
ବୟସ ବାର ସେ ବାଳୁତ,   ଦେଖ କି ତାହାର ହିମ୍ମତ,
ସେବ ନ ପାରି ସେ ଘଳଣ,   ଶୋଇ ପଡ଼ିଲା ତହିଁ ହୁଅ ।]

—ପୃ ୪୪.

ଜୀବନ-ବିଶ୍ୱବିଦ୍ୟାଳୟେ ଏଣିକି ପଶିବୁ ନିର୍ଭୟେ ।

× × ×

ବୋଲନ୍ତି ବୃହସ୍ପତି ଖେଦେ ଆରୁଣି ଯୁଗ ନାହିଁ ଏବେ ।
*ସବୁଙ୍କ ରୂପେ ସରକାର ଭାବନ୍ତି ନିଜକୁ ଈଶ୍ୱର,
ଶିକ୍ଷାକୁ ନିଜ ଅକ୍ତିଆରେ ରଖିଛନ୍ତି ସେହୁ ସ୍ୱଚତୁରେ ।
କରନ୍ତି ରାଜକର୍ମଚାରୀ — ନିଯୁକ୍ତି ଆଳ ସେହୁ ଧରି
ଶିକ୍ଷା ବିଭାଗ ଦେଇ ଖୋଲି ଶିକ୍ଷା ଲକ୍ଷ୍ୟକୁ ଦିଏ ମୋଡ଼ି ।

ଇତି ଶ୍ରୀ ଧର୍ମରାଜ୍ୟେ ଦ୍ୱିତୀୟ ଖଣ୍ଡେ ବୃହସ୍ପତି ଜଣାଣେ ଇସ୍କୁଲ
କଲେଜର ଛାତ୍ର ଓ ଅଧ୍ୟାପକମାନଙ୍କର ଗୁଣ କର୍ମ
ବର୍ଣ୍ଣନ ନାମ ତୃତୀୟ ଅଧ୍ୟାୟ ।

---

## ଚତୁର୍ଥ ଅଧ୍ୟାୟ

### ଛାତ୍ରମାନଙ୍କର ନୈତିକ ଅଧୋଗତି

୧ । ପ୍ରଶ୍ନ — ଛାତ୍ରମାନଙ୍କର ଭାବନାଶୂନ୍ୟ ହୃଦୟ ଓ ବୁଦ୍ଧିଭେଦ କିପରି ଘଟୁଛି ?

ବୃହସ୍ପତି ଉବାଚ

ବୃହସ୍ପତି ସେ ଅତି ଖେଦେ କହନ୍ତି ଦିନାଥଙ୍କ ଅଗେ ।
ମାନବେ ଅସୁରର ସୁତ ଧରି ଦେବଙ୍କୁ ପୀଡ଼ା ଦିଅନ୍ତି,
ତାଙ୍କର ଦାୟାଦ ଯେମାନେ ଆମ୍ଭକୁ ଭୁଲିଲେଣି ସେମାନେ

---

* ସରକାରୀ ଓ ବେ-ସରକାରୀ ଚାକିରିଆ ନିଯୁକ୍ତିର ଆଳ ଧରି ଓ ରାଜଭକ୍ତ ପ୍ରଜାସୃଷ୍ଟି କରିବା ଉଦ୍ଦେଶ୍ୟରେ ସରକାର ଶିକ୍ଷା-ନୀତିକି ନିୟନ୍ତ୍ରଣ କରୁଛି ।

ଦୁର୍ଲଭ ମାନବ ଜୀବନ, ତାକୁ କରିଲେ ପ୍ରହସନ ।
ଅହିଂସା ସେବା ତ୍ୟାଗ ସତ୍ୟ ସଂଯମ ଶୌଚ ଦୟା ବ୍ରତ
ଏସବୁ କରଣ ବଦ୍ରୂପ ନିଶ୍ଚିନ୍ତ ପଶୁ ହୋଇଲେକ ।
ସାମାନ୍ୟ କିଛି ଆଳ ପାଇଁ ତହୁଁରୁ ଗୋଳ ଉପୁଜାଇ
ଗୋଷ୍ଠୀକୁ ଗୋଷ୍ଠୀ * ଧର୍ମଘଟ— ସୁଆଙ୍ଗେ ମାତଯାନ୍ତି ଘଟ ।
ଛାତ୍ର ବାଡ଼ରେ ଲେଖି ଗୀତ ଦିଅନ୍ତି ଗାଳି ଯେ ସଂଗତ ।
ଶିକ୍ଷକ କଥା ନ ଶୁଣନ୍ତି ତାର କଥାରେ ହସି ଦ୍ୟନ୍ତି ।
ଶିକ୍ଷକ ଅଙ୍ଗଭଙ୍ଗୀମାନ ଗ୍ଲକଲନ ତା ଭୂଷଣ,
ଏସବୁ ଅଭିନୟ କରି ତାହାର ନିନ୍ଦା ଯାନ୍ତି କରି ।
ଯେଣୁ ଶିକ୍ଷକ ନୁହେଁ ସଚ୍ଚା, ଗ୍ଛଠୁଁ ପାଏ ତେଣୁ ଖୋଂଆ ।
ସତ୍ୟକୁ ଜାଣିବାର ପାଇଁ ଗ୍ଛଙ୍କ ଅଜ ଇଚ୍ଛା ନାହିଁ ।
ସତ୍ୟ ଜାଣିବା ଇଚ୍ଛା ଯା'ର ତାର ନ ଥାଏ ଅହଂକାର,
ଧରମଛଡ଼ା ରାଜଦ୍ରୋହୀ— ଦଳଙ୍କ କଥା ଶୁଣି ବାଇ
ତାଙ୍କ କଥାରେ ଯାଇ ମାତି ତହିଁରେ କ୍ଷଣେ ମାତଯାନ୍ତି ।
ପୁଣି ପରୀକ୍ଷା ବେଳଶନ୍ତା ଭୂଷଇ ଆସି ଯେବେ ମଥା
ଆକାଶ-ସୌଧ ସୃଷ୍ଟି ଗ୍ଲଡ଼ ଘୋଷି ବସନ୍ତି ବହି ଧରି ।
ଏମନ୍ତେ ବୁଦ୍ଧିଭେଦ ଘଟି ଗ୍ଛେ ହୁଅନ୍ତି ଭ୍ରାନ୍ତମତି ।
ଯେଣୁ ତନାଠୁ ତନାକଥା ପଶୁଛି ଗ୍ଛଙ୍କର ମଥା ।
ପୁସ୍ତକ ଦିଏ ଉପଦେଶ 'ସର୍ବଦା ଳୁହ ସତ୍ୟଭାଷ',
ବାପ ଭାଇଙ୍କ ପାଶେ ରହୁ, ସ୍ୱେଚ୍ଛାବିକାର ଶିଖେ ସେହୁ ।
ଦେଶ ନେତାଏ ଦ୍ୟନ୍ତି କହୁ ଧରମ ବୋଲି କିଛି ନାହିଁ ।
ଏ ହେତୁ କେଉଁ କଥାସାର କରି ନ ପାରେ ସେ ବିଗ୍ଚର;

* ଗ୍ଛସର ଧର୍ମଘଟର କାରଣ ଶିକ୍ଷକ ଓ କର୍ତ୍ତୃପକ୍ଷଙ୍କ ଇନ୍ଦ୍ରିୟ-ପରତନ୍ତ୍ରତା ଅଟେ ।

ଏଣୁ ସଂଶୟ ଭ୍ରମଗ୍ରନ୍ଥି ଛାତ୍ରର ହୃଦକୁ ପୀଡ଼ନ୍ତି ।
ଅଙ୍କ ଭୂଗୋଳ ଇତିହାସ ଏଥିରୁ ନ ପାଏ ସେ ରସ ।
ବାଧ୍ୟରେ ଏସବୁ ପଢ଼ଇ ପରୀକ୍ଷା କୃତିତ୍ୱର ପାଇଁ
ଜୁଟାଇବାରେ ହୃଦଭ୍ରାନ୍ତ ଏମାନେ ଅକାମୀ ଅଟନ୍ତି ।
ଜୀବନ ପଥରେ ଆଲୋକ ଦେଖାଇବାକୁ ଅସମର୍ଥ ।
ଶୂନ୍ୟ ହୃଦୟ ଆଜି ହୋଇ ଛାତ୍ରର ଲକ୍ଷ୍ୟ କିଛି ନାହିଁ ।
ଶିକ୍ଷକଠାରେ କିଛି ସେହି ସତ୍ୟର ରଶ୍ମି ନ ଦେଖଇ,
ଶିକ୍ଷକ କହିଲେ ଏତିକି ବୁଝଇ ତାର କ୍ଷୁଦ୍ର ମତି ।
ଭୂଗୋଳ ଇତିହାସ ଅଙ୍କ ଏଥେ ଶିକ୍ଷକ ସୁପଣ୍ଡିତ ।
ଅର୍ଥ ବ୍ୟୁତ୍ପତ୍ତି କରିଦେଇ, କଠିନ ଶବ୍ଦକୁ ବୁଝାଇ
ବିଷୟ ସୁବୋଧ୍ୟ ସୁପାଠ୍ୟ କରିପାରଇ ସୁଶିକ୍ଷକ ।
ଏ ବିନେ ଆନ ଗୁଣ ସେହୁ ଶିକ୍ଷକଠାରେ ନ ଦେଖଇ ।
ଶିକ୍ଷକ ଛାତ୍ର ପରି ନିଜେ ଦୁଃଖ ସନ୍ତାପେ ପଡ଼ି କାନ୍ଦେ ।
ଶିକ୍ଷକ ନିଜେ ଛାତ୍ର ପରି ଭୋଗ ବିଳାସେ ରହେ ଜଡ଼ି,
ସଂଯମ ବୋଲି କି ପଦାର୍ଥ ଗୁରୁଠୁଁ ଶିଖେ ନାହିଁ ଛାତ୍ର ।
ଭୋଗବିହାର ନିଦ୍ରାଭୀତି ପଶୁର ଏତ୍ରୁ ଗୁରୁ ସ୍ଥିତି,
ବିବେକ ବୁଦ୍ଧିର ସମ୍ବଳ ଅଧିକା ଅଟେ ମଣିଷର ।
ବିବେକ ବୁଦ୍ଧି ହେତୁ ବୋଧ ଏଥିଁ ବଞ୍ଚିତ ଛାତ୍ରବର୍ଗ ।
ଭୋଗ ବିହାର ନିଦ୍ରାଭୀତି ଏଥେ ଜଡ଼ିତ ଛାତ୍ରମତି ।
ଆହାର ବିହାର ଆଳସ୍ୟ ସର୍ବଦା ମାତିଥାନ୍ତି ଶିଷ୍ୟେ,
*ପରୀକ୍ଷା ବେଳ ପ୍ରବେଶନ୍ତେ ପ୍ରମାଦ ଗଣନ୍ତି ଯେ ଛାତ୍ରେ ।
ଆହାର ନିଦ୍ରା ତେଜି ଦୂରେ ଘୋଷନ୍ତି ପରୀକ୍ଷା ଆତୁରେ,
ଏ ଘୋର ତପସ୍ୟା କରେଖି ବିଶ୍ୱ ବିଦ୍ୟାର କୁଳପତି

* ପରୀକ୍ଷା ଆତଙ୍କ ଛାତ୍ରର ବୁଦ୍ଧିକୁ ଲୋପ କରୁଛି ।

ଏ ଦେଶ ବ୍ରହ୍ମା ତୁମେ ହୋଇ　ଗୁରୁଙ୍କ ତପେ ଭୁଲିଯାଇ
ଯାଚି ଦେଉଅଛ ବର ସବୁ　ଆଇଏ, ବିଏ, ଏମେ, ପ୍ରଭୃ ।
ଅସୁର ତେଜ ଅପ୍ରମିତ　ବଢ଼ାଇ ଅଛ ହେ ବିଧାତ୍ ।
ଭୋଗପାଇଁ ଯେ ଘୋର ତ୍ୟାଗ　ସାଧିବା ଅସୁର ସ୍ୱଭାବ ।
ହିନାଥ ଗୋସାଇଁ ହେ ଶୁଣ　ତୁମର ସବୁ ଏ ଭିଆଣ ।
ଛଳନା ତ୍ୟାଗ ତୁମେ ଦେଖି　ତହିଁରେ କରି ମତିଭ୍ରାନ୍ତ
ତୁମେ ଦେଉଛ ଯାଚି ବର　ମଣିଷ ହେଉଛୁ ଅସୁର ।
ଧରମ ପଥ ଦେଇ ଛାଡ଼　ଅଧର୍ମ ପଥେ ଯାନ୍ତି ଚାଲି
ଏଣୁ ହେ ହିନାଥ ଗୋସାଇଁ　ଅସୁର ତାପୁ ରଖ ମହୀ ।

× × ×

ପରୀକ୍ଷା ବେଳ ଛାଡିଦେଲେ　ଆନ ଯେ ସବୁ ସମୟରେ
ଅହାର ବିହାର ଶୟନ　ଏ ତିନ କଥା ଛଡ଼ା ଆନ
ଜାଣନ୍ତି ନାହିଁ ଛାତ୍ରଗଣ,　କରନ୍ତି ଇନ୍ଦ୍ରିୟ ତର୍ପଣ ।
ସଭିଙ୍କୁ କରି ଦେଖାଇର　ମନେ ବହନ୍ତି ଅହଂକାର ।
ଭାବଣି ସବଙ୍କ ନିଜକୁ　ସୁନ୍ଦର ମଣି ଆପଣାକୁ
ନିଜର କଥାକୁ ଅକାଟ୍ୟ　ବୋଲି କରନ୍ତି ପ୍ରମାଣିତ ।
ଏହାକୁ କହୁ ଆତ୍ମପ୍ରୀତି,　* ମନର ଅଟେ ଏ ବିକୃତି ।
ଏ ଘୋର ବିକୃତି ଘଟିଲେ　ଉଦ୍ଧାର ତହୁଁ ନୁହେଁ ଭଲେ ।
ନାର୍ଶିଶବୋଲି ଯେ କିଶୋର　ଥିଲିକ ଯବନ ଦେଶର,
ମନେ ବହିଣ ଅହଂକାର　ନିଜକୁ ଭାବଇ ସୁନ୍ଦର ।
ସଂସାରେ ଯେତେ ନାରୀ ନର　ତାର ଅଖିରେ କଦାକାର ।
ନିଜ ରୂପରେ ନିଜେ ଭୋଳ　ହୋଇ କାଟଇ ଦିନକାଳ

* ଅହଂକାରରୁ ଆତ୍ମପ୍ରଣୟ ବିକୃତି(Narcissism) ଘଟେ ।

ନିଜର ଶବପଟ୍ଟ ଦେଖି ତହିଁରେ ଖୋସି ଦିଏ ଅଖି ।
ପାଗଳ ପରି ଚୂମ୍ବ ଦିଏ ତା ସଙ୍ଗେ କଥାଭାଷା ହୁଏ ।
ଅଦ୍ଭୁତ କଥା ଶୁଣ ଧନେ ଯାଉଣି ଥିଲି ସେହୁ ବନେ
ଦେଖିଲି ଏକ ପୁଷ୍କରଣୀ ସ୍ୱଚ୍ଛ ସ୍ଫଟିକ ପରି ପାଣି ।
ପିଇବା ପାଇଁ ଇଚ୍ଛାକରି ଘାଟକୁ ଆସିଲିକ ଚଳି,
ଜଳରେ ନିଜ ପ୍ରତିବିମ୍ବ ଦେଖିଣ ହୋଇଲି ବିମୁଗ୍ଧ ।
ନିଜ ଅସ୍ତିତ୍ୱ ପାଶୋରିଲି ଛାୟାକୁ ସତ୍ୟ ମନେକଲି,
ସେ ଛାୟା ଆଲିଙ୍ଗନ ଆଶେ ଡେଇଁ ପଡ଼ିଲି ଜଳଦେଶେ,
ଛାୟାକୁ କରି କାୟା ଜ୍ଞାନ ମୋହରେ ଛାଡ଼ିଲି ପରାଣ ।
ନାର୍ସିସ ପ୍ରକୃତିକୁ ବହି ଗୁଟେ ଯେ ଆଜି ହୋନ୍ତି ବାଇ ।
ନିଜକୁ ଧନୀ ମାନୀ ଜ୍ଞାନୀ ସୁସଭ୍ୟ ସୁନ୍ଦର ବଖାଣି
ହୁଅନ୍ତି ଭାବନା ପ୍ରବଣ * ଅଳ୍ପକେ ଉତ୍ତେଜିତ ମନ ।
ଶ୍ରମିକ ସର୍ବହରା ଦୁଃଖ— ବର୍ଣ୍ଣନା ଶୁଣି ମର୍ମାହତ ।
ଆଖି ଲୋତକେ ଛଳ ଛଳ କଣ୍ଠ ହୁଅଇ ବାଷ୍ପାକୁଳ ।
କ୍ରୋଧରେ ଶୋଷକ ଧନୀଙ୍କି ସାକ୍ଷାତେ ରାକ୍ଷସ ଭାବନ୍ତି ।
ବାସ୍ତବ ଯେବେ ନିଜେ ଗୁଠ ହୁଅନ୍ତି ନିଷ୍ଠୁର ଶୋଷକ ।
ଘରେ ଯେ ପୂଷାରି ଚାକର ସଙ୍ଗେ କରନ୍ତି ନାନା ଗୋଳ ।
ହୁକାର କରିଣ ଭାଷନ୍ତି ନାନା ଫରମାସି ଆଦେଶନ୍ତି ।
କାନ୍ଧରେ, ମୁଣ୍ଡରେ, ପିଠିରେ କୁତ୍ସିତ କିଂକର ଭାବରେ
ମଣିଷ ମଣିଷକୁ ବୁହେ ତହିଁ କେ ପାଟି ନ ଫିଟାଏ ।
ରିକ୍ସାରେ ଗୁଟେ ଯେତେବେଳେ ଚଳନ୍ତି ସିନେମା ବଜାରେ
ପଇସା ନେଇ ନାନା ଦ୍ୱନ୍ଦ୍ୱ କରନ୍ତି ରିକ୍ସାବାଲା ସଙ୍ଗ ।

---

* ଅସ୍ଥାୟୀ ଭାବ-ପ୍ରବଣତା ଆଜି ଛାତ୍ରଙ୍କୁ ଘାରୁଛି ।



[ନାର୍ସିସ ବୋଲି ଯେ କିଶୋର,   ଥିଲା ଯବନ ଦେଶର ।

× × ×

ଜଳରେ ନିଜ ପ୍ରତିବିମ୍ବ,   ଦେଖିଣ ହୋଇଲା ବିମୁଗ୍ଧ ।
ସେ ଛାୟା ଆଲିଙ୍ଗନ ଆଶେ   ଡେଇଁ ପଡିଲା ଜଳଦେଶେ ।
ନାର୍ସିସ ଫୁଲଟିକୁ ବନ୍ଧୁ,   ସୃଷ୍ଟେ ଯେ ଅଙ୍ଗ ହୋନ୍ତେ ତାର ।]

—ପୃ ୫୦

ବିକ୍ଷାବାଳର ଦୁଃଖ ଦେଖି ସହାନୁଭୂତି ନ କରନ୍ତି ।
ନିଜର ସୁଠକେଶ ଖଣ୍ଡେ ଚପାଇ ଦେଇ କୁଳ୍ମୁଣ୍ଡେ
ଶୋଷକ ସର୍ବହରା ଦଳ ନିଜେ କରନ୍ତି ପରସ୍ପରେ ।
ଜ୍ଞାନ କରମ ନିଷ୍ଠା ଛାଡ଼ି ଭାବ ପ୍ରବଣ ହୋଇ ଖାଲି
କେ କିଛି କରି ନ ପାରଇ, ବୃଥା ତା ଧନ ଯାଏ ବହି ।
କ୍ଷଣଭଙ୍ଗୁର ଏ ଶରୀର କୃମି କୀଟର କ୍ରୀଡ଼ାସ୍ଥଳ ।
ମାୟାରେ ହୋଇ ବିମୋହିତ ଏହାକୁ କରନ୍ତି ସଜ୍ଜିତ ।
କେଶବିନ୍ୟାସ ପରିପାଟୀ ବହୁ ସମୟ ତହିଁ ଦ୍ୟନ୍ତି ।
* ସୁନ୍ଦର ସୁରୁଚି ପୋଷାକ ପିନ୍ଧିଲେ ଭାନ୍ତି ଆତ୍ମସୁଖ ।
ଭାବନ୍ତି ମୋପରି ପୋଷାକ ପିନ୍ଧି ନାହିଁ କେ ଆନ ଲୋକ ।
ଏଣୁ ମୋଠାରେ ସଭିଙ୍କର ଦୃଷ୍ଟି ପଡ଼ଇ ବାରମ୍ବାର ।
ସଭିଙ୍କ ନୟନ-ପିତୁଳି ଧନ୍ୟ ମୁଁ ଆଜି ପାଲଟିଲି,
ମୋର ଗୋଡ଼ରେ ଯେଉଁ ଯୋତା ସେ ଅଟେ ବହୁତ ଦାମିକା ।
ଏତେ ପଇସା ଦେଇ କେହି କିଣିବ କା'ର ଶକ୍ତି ନାହିଁ ।
ମୋର ହାତରେ ଘଡ଼ି ଦେଖି ସଭିଙ୍କ ଆଖି ଯାଏ ଲାଖି,
ଏଥିରେ ରେଡ଼ିୟମ ଅଛି ଏଣୁ ଅନ୍ଧାରେ ହୁଏ ଦେଖି ।
ତିନିଶ ଟଙ୍କା ଦେଇ ମୁହିଁ ଏହାକୁ କିଣି ଯେ ଅଛଇ ।
କେ ଏହା କିଣି ଯେ ପାରିବ, ଏତେ ପଇସା କେ ପାଇବ ?
ଏମନ୍ତେ କହି ମୋର ମୋର ଜାତିର ଦାୟାଦ ସକଳ
ବୁଦ୍ଧି ଭେଦରେ ହୋଇ ଘାର ଆତ୍ମା-ଅସ୍ତିତ୍ୱ ଯାନ୍ତି ଭୁଲି,
ଅଜ୍ଞାନଠାରୁ ଛନ୍ତି ଶିଖି ଈଶ୍ୱର ବୋଲି କେ ନାହାନ୍ତି ।
ଆତ୍ମା ବୋଲି ଯେ କିଛି ନାହିଁ, ଗୁଲିଖଟିର ଗପ ଏହି ।

*ଅହଂକାର ହେତୁରୁ ଜୀବ ହୃଦୟହୀନ ହୁଏ ।

ଏ ବିଶ୍ୱ ଗଢ଼ା ଅଣୁ ନେଇ	ଅଣୁ ପରେ କେ ଅଉ ନାହିଁ ।
ଦେହଟି ଅଟେ ଖାଣ୍ଟି ସତ	ଦେହରୁ ମନ ହୁଏ ଜାତ,
ଦେହଟି ଗଲେ ସବୁ ଯାଇ,	ପୁନର୍ଜନମ ଅଉ କାହିଁ ?
ଏଣୁ ରହିଛ ଯେତେ ଦିନ	ଆନନ୍ଦ କରୁଥିବ ମନ ।
ଘିଅ ଖାଇବ ଋଣ କରି,	ଧର୍ମ ଅଧର୍ମ ନ ବିଚାରି ।
ଏମନ୍ତ ଭାବ ସବୁ ଛାତ୍ରେ	ମଜ୍ଜନ୍ତି ବିଳାସର ସ୍ରୋତେ
ଭାବନାଶୂନ୍ୟ ହୃଦ ବହି	ଅଶାନ୍ତ ହୋନ୍ତି ଖେଦ ପାଇ ।

୮ । ପ୍ରଶ୍ନ—ଶିକ୍ଷାର ଲକ୍ଷ୍ୟ ସଙ୍ଗେ ଶିକ୍ଷାଦାନ ପ୍ରଣାଳୀର ସାମଞ୍ଜସ୍ୟ ନ ଥିବାରୁ ଛାତ୍ରମାନଙ୍କ ମଧ୍ୟରେ ହିଂସା ଓ ଅସତ୍ୟ ବ୍ୟାପୁଛି କିପରି ?

ବ୍ରହ୍ମା ଉବାଚ

ଶୁଣିଣ ବୃହସ୍ପତି କଥା	ବିଷାଦେ ବୋଲନ୍ତି ବିଧାତା ।
ଶୁଣ ହେ ଗୁରୁ ବୃହସ୍ପତି	ସ୍କୁଲ କଲେଜ ଛାତ୍ରକୀର୍ତ୍ତି,
ତୁମେ ଯେ ବୋଲି ମୁଁ ଦେଉଛି	ଛାତ୍ରଙ୍କୁ ବରମାନ ଯାଚି ।
ବିଶ୍ୱବିଦ୍ୟାର କୁଳପତି—	ବେଶେ ମୁଁ ଛାତ୍ରଙ୍କୁ ପରଖି ।
ଦେଉ ଯେ ଥିଲି ନାନା ବର	ଦେଖି ତାଙ୍କର ତପ ଘୋର ।
ଆଜ ମୋଠାରୁ ବର କେହି	ତପସ୍ୟା କରି ନ ଇଚ୍ଛଇ ।
ବିନା ସାଧନ ବିନା ତପ	ବିନା ପଢାରେ ଆଜ ଛାତ୍ର
ଆଇଏ, ବିଏ ପଦମାନ	ମାରି ନେବାକୁ କରେ ମନ ।
ଅସୁରେ ନାନା ମାୟା କରି	* ପ୍ରଶ୍ନ କାଗଜ ଚୋରିକରି ।

* ଛାତ୍ରମାନେ ପରୀକ୍ଷା ପ୍ରକୋଷ୍ଠରେ ଅସତ୍ ଉପାୟ ଅବଲମ୍ବନ କରିବାକୁ କୁଣ୍ଠାବୋଧ କରୁ ନାହାନ୍ତି ।

ପାଞ୍ଚଶ ହଜାରେ ଟଙ୍କାରେ
ବିକାନ୍ତି ଛାତ୍ରଙ୍କୁ ବଜାରେ ।
ପରୀକ୍ଷା ପ୍ରକୋଷ୍ଠ ପାଖରେ
କାହିଁ ଛପିଣି ସୁଚତୁରେ ।
ଧରିଣି ଡ଼ାକବାଜି କଳ
ଛାତ୍ରଙ୍କୁ ବତାନ୍ତି ଉତ୍ତର ।
ବିନା ସାଧନ ବିନା ତପେ
ଉପାଧି ନିଅନ୍ତି ଯେ ଛାତ୍ରେ ।
ମୋର ବରକୁ ଆଉ କେହି
ତପସ୍ୟା ବଳେ ନ ବାଞ୍ଛଇ ।
ବସି ପରୀକ୍ଷା ପ୍ରକୋଷ୍ଠରେ
ଯଦି କେ ଛାତ୍ର ଚୋରି କରେ,
ମୋର କଙ୍କର ତହୁଁ ଅସି
ଚୋରକୁ ଧରଇ ଆକର୍ଷି;
ସବୁ ଛାତ୍ରେ ଯେ ମିଳିଯାଇ
ମାରନ୍ତି ତାହାକୁ ନିଠାଇ ।
ରାଜନୈତିକ ନେତା ହୋଇ
ଅସୁରେ ମୋ'ଠି ରୋଷବହି
ଛାତ୍ରଙ୍କୁ ଦିଅନ୍ତି ମତାଇ
ପରୀକ୍ଷା ଆଉ ଦିଅ ନାହିଁ ।
ଏମନ୍ତେ ଅଟେହି ବୃହସ୍ପତି
ଅସୁରେ ଉଦ୍‌ବାର୍ଯ୍ୟା ହୁଅନ୍ତି ।
ଯାଚି ମୁଁ ବର ଦେଉ ନାହିଁ
ବଳେ ତା ନିଅନ୍ତି ଛଡ଼ାଇ ।
ଅସଲ ପରୀକ୍ଷା ସଂଯମ
ଆନ ପରୀକ୍ଷା ପ୍ରହସନ ।
ବିନମ୍ର ଉପାଧି ଅସଲ
ଅନ୍ୟାନ୍ୟ ଉପାଧି ନକଲ ।
ଅସୁରେ ଏହାକୁ 'ଭୁଲିଲେ
ଡିଗ୍ରି ବିକିବା ସାର କଲେ ।
ସଂଯମ ସେବା ତ୍ୟାଗ ଛାଡ଼ି
ଆଇଏ, ବିଏ ପଦ ଲୋଡ଼ି
ବାବୁର ଆସନେ ବସିଲେ
ଧୋବଲ ଠକ ପାଲଟିଲେ ।
ବାପ ଅଜାଙ୍କୁ ମଫସଲ
ବୋଇଲେ ଏହୁ ଘୃଣା କର ।
ଜନତା ସଙ୍ଗରେ ବାବୁଙ୍କ
ସମ୍ପର୍କ ସବୁ ହେଲା ଲୋପ ।
ପରୀକ୍ଷା ବେଳେ ଖଟି ଖଟି
ମଥାକୁ ଭାରାକ୍ରାନ୍ତ ରଖି
ବାବୁଏ ହେଲେ ରାହୁମୁଣ୍ଡ
ଗଣ୍ଡିବିହୀନ ପରଚଣ୍ଡ ।
ପ୍ରଜାଏ ମୁଣ୍ଡହୀନ କେତୁ
ପରାଏ ହୋଇଲେ ଏ ହେତୁ;
ପଡ଼ିଲେ ଠାଉଠର ଫାନ୍ଦେ
ଧୋବଲ ଠକଙ୍କ ବରାଦେ ।

× × ×

ଆଜ ଯେ ୧ ଶିକ୍ଷା ଦିଆଯାଏ କେବଳ ଚପ୍ପୁଳିଠା ହୁଏ ।
ଶିକ୍ଷାର ଲକ୍ଷ୍ୟହିଁ ପରୀକ୍ଷା ନାନା ଉପାଧି ହୁଏ ଏକା ।
ଯେ ଯେତେ ଧପା ପାରେ ମାରି କୌଶଳେ କରିପାରେ ଚୋରି
ମୁରବିଜୋର ଯାର ଥାଇ, ଯେ ଯେତେ ଶାଠ ଆଚରଇ
ପରୀକ୍ଷା କୃତିତ୍ୱ ଲଭଇ, ଉପାଧି ପାଇପାରେ ସେହି ।
ଦୁଷ୍ଟ ଅସାଧୁ ଚୋର ପାଜି ହିଂସୁକ ଅବା ମିଥ୍ୟାବାଦୀ
ଯେ ଯେତେ ପଛେ ଥାଉ ହୋଇ ତହିଁରେ ଯାଏ ଆସେ ନାହିଁ;
ସଦି ପରୀକ୍ଷା ପ୍ରକୋଷ୍ଠରେ ଠିକେ ଉତ୍ତର ଲେଖିପାରେ,
ପରୀକ୍ଷା କୃତିତ୍ୱର ପର୍ବ ଅବଶ୍ୟ ପାଏ ସେହି ଛାତ୍ର ।
ଚୋରିକି ପାପ ବୋଲି କେହି ଆଜି କେ ଜନ ନ ଭାବଇ
ସମାଜେ ଉଦାହରଣ ରହି ଚତୁରେ ଚୋରି ଯେ କରଇ
ବାହାବା ଲଭଇଟି ସେହି ବୁଦ୍ଧିଆ ବୋଲି ତାକୁ କହି ।
ଗାଲଗୁରୁଡ଼ ମାରି ଯେହି ବହୁତ ମିଛ ଯାଏ କହି
ଶିକ୍ଷକମାନଙ୍କୁ ଭୁଲାଇ ବୋକା ବନାଇ ଯେ ଦିଅଇ
ସେ ଗୁଣ୍ଠ ସହପାଠୀ ମେଳେ ନେତା ରୂପରେ ନାମ କରେ ।
ବିତଣ୍ଡା ଯୁକ୍ତି କରି ଯେହି ଶିକ୍ଷକେ ରଗାଇ ଦିଅଇ
ଛଳରେ କଥା କହି ଯେହି ସଭିଙ୍କୁ ଆକୃଷ୍ଟ କରଇ,
ଛାତ୍ର ସମାଜେ ଧନ୍ୟ ହୋଇ ବୀର ପଦବୀ ପାଏ ସେହି ।

× × ×

ଛାତ୍ର ମଧ୍ୟରେ କାମ କ୍ରୋଧ ୨ ସର୍ବଦା କରୁଥାନ୍ତି ଦ୍ୱନ୍ଦ୍ୱ ।

---

୧ ଶିକ୍ଷାର ଲକ୍ଷ୍ୟ କେବଳ ପରୀକ୍ଷା କୃତିତ୍ୱ ଓ ଉପାଧି ଲାଭରେ ପର୍ଯ୍ୟବସିତ ହୋଇଅଛି ।

୨ ତୃଷ୍ଣାର ଅବରୋଧରୁ ମାନସିକ ବିକୃତି ଘଟେ ।

ଫୋଲ୍ ବାଉଁଶେ ଘୁଣ ପଶି    ତାକୁ ଯେସନେ ଦିଏ ଧ୍ୱଂସି<br>
ତେସନେ କାମ ପାପାସୁର    ସ୍ଥଳ ଶରୀରକୁ କରେ ଜୁର ।<br>
ଚିର ଅତୃପ୍ତ ଅଭିଳାଷ    ହୁଅଇ ନାହିଁ କେବେ ତୋଷ;<br>
ତୃଷ୍ଣାରେ ଅବସାଦ ନାହିଁ    ତୃପ୍ତିରେ ଅତୃପ୍ତି ବଢ଼ଇ;<br>
ତୃଷ୍ଣାର କବଳରେ ପଡ଼ି    ଜୀବ ଦାସ୍ୟାଦେ ହୋନ୍ତି ଘାର ।<br>
ନାନା ବିକୃତ ଆଧିବ୍ୟାଧି    ଏଥିରେ ସ୍ଥଳ ହୋନ୍ତି ଛନ୍ଦ ।<br>
ଉନ୍ମାଦଗ୍ରସ୍ତ କେ ହୁଅଇ    ବାତୁଳ ଗ୍ରିତକ ଧରଇ,<br>
ଚଞ୍ଚଳ ଚିତ୍ତ ସଦା ତାର    କେବେ ନ ହୁଏ ମନ ସ୍ଥିର;<br>
କେବେ ବା ଘୋର ବିଷାଦରେ    ପଡ଼ିଣ ମୂକ ଭାବ ଧରେ ।<br>
ଆନକୁ ପୀଡ଼ା ଦେଇ କେହୁ    ମନରେ ସନ୍ତୋଷ ଲଭଇ,<br>
ପରପୀଡ଼ାରେ ତାର ତୃପ୍ତି    ଧରେ ବିଦ୍ରୋହ ମନୋବୃତ୍ତି ।<br>
ସଭିଙ୍କି କରଇ ବିଦ୍ରୂପ    କା'ଠାରୁ ନ ବୁଝଇ ସତ୍ୟ ।<br>
ନିଜକୁ ସର୍ବଜ୍ଞ ମଣଇ    ପର ଗୁଣକୁ ନ ସହଇ ।<br>
ଦିବା ସ୍ୱପ୍ନେ କେ ବାଇ ହୋଇ    ଅକାଶ ସଉଧ ରଚଇ;<br>
କେହୁ ବା କ୍ରୋଧଶୀଳ ହୋଇ    କଳହପ୍ରବଣ ହୁଅଇ<br>
କେ ବା ବିସ୍ମୃତିଶୀଳ ହୁଏ    କିଛି ତା ମନରେ ନ ରହେ ।<br>
ଅତୃପ୍ତ ଅବରୁଦ୍ଧ କାମ    ସ୍ଥଳଙ୍କୁ ପୀଡ଼େ ନିଶିଦିନ;<br>
ଅଭିଭାବକ ପିତାମାତା    ଏଥିରେ ନ ଦିଅନ୍ତି ଚିନ୍ତା ।<br>
ଭୋଗ ବିଳାସେ ପଡ଼େ ସନ୍ତୁ    ସଂଯମ ପଥ ଅବା ହୁଡ଼ୁ<br>
ପୁଅ କପଟ ପାଶ କରି    ଲଭିବ ସର୍କାରି ଗ୍ରୁକିରି<br>
ପିତାମାତାଙ୍କ ଏହୁ ଆଶ    ବିଷକୁ ମଣନ୍ତି ପୀୟୂଷ ।<br>
ଗଣେଶ ପରି ପୁଅ କେହୁ    ତାତ ଜନନୀ ନ ବାଞ୍ଛଇ<br>
ତାଙ୍କ ପରିଏ ସନ୍ତାନ    ଇଚ୍ଛନ୍ତି ସର୍ବେ ମୂଢ଼ ଜନ ।<br>
ଭିତର ନାରଖାର ଅତି    ଏଥେଁ ନ ପଡ଼େ କା'ର ଦୃଷ୍ଟି

ସ୍କୁଲ ଭିତର ନର୍କପୁର ବାହାର ରଖନ୍ତି ସୁନ୍ଦର ।
* ଉଦାସୀ ଷ୍ଟର ଯେବେ କେହି ଦେଖେ ନଜର ନ ଦଅଇ
ଶତ୍ରୁ ସଂଯମେ ଧ୍ୟାନ ଦଏ ବାହାର କଥା ଭୁଲିଯାଏ ।
ଧବଣ ରୁକ୍ଷବେଶ କେଶ ଆସଇ ପିତାମାତା ପାଶ;
ବିଷାଦେ କାନ୍ଦଣି ଜନନୀ କହନ୍ତି ବାହୁନି ବାହୁନି;
ବାବୁ ରେ ତୋର ହେଲା କସ ଶୁଖି ଯାଇଛୁ କମା ବେଶ
କାର୍ତ୍ତିକ ପରି ଏ ଚେହେରା ବାବୁ ରେ ତୋର କାହିଁ ଗଲା ?
ଲଣ୍ଡା କମାଇ ଅଛୁ ହୋଇ ଦୋଷୀ ପରି ଏ ଦିଶୁ ତୁହି ।
ଆଖି ତୋ ପଶିଅଛି କଆଁ ବାବାଜୀ ହେଲୁକି ମୋ ଝୁଅ ?
ମାଛ ତୁ ଛାଡ଼ିଲୁ କମାଇ ଷଣ୍ଡ କି ହୋଇଗଲୁ ତୁହି ?
ସହପାଠୀଙ୍କ ମେଳେ ଯାଇ ନାନା ବିଦ୍ରୂପ ସହେ ସେହି ।
ଲୁଙ୍ଗି ବେଶଟି ତାହାର ବନ୍ଧୁଙ୍କୁ ଦିଶେ କଦାକାର
ମୂକ ବଧିର ଜଡ଼ ପରି ଚଳେ ସେ ଶାନ୍ତମତି ଧରି;
ନିରେଖି ଏ ରୀତି ତାହାର ବୋଲନ୍ତି ତାଙ୍କୁ ଜାନୁଆର
ତହିଁରେ ବିଚଳିତ ନୋହି ନିନ୍ଦାଙ୍କୁ ସ୍ତୁତି ମଣେ ସେହି ।
ଯିବେ ମୋ ଉପାସ୍ୟ ଦେବତା ଅଟେ ଗଣେଶ ସିଦ୍ଧିଦାତା ।
ବିବେକାମୃତ ନିର୍ବିକାର ଦେହର ବୁଦ୍ଧି ନାହିଁ ତାର ।
ଗଣେଶ ବାଳକ ପରି ଏ ବାମ ହାତରେ ଲଡ଼ୁ ଖାଏ,
ମହା ପଣ୍ଡିତ ଯେଣୁ ସେହି ଦେଖେ ନଜର ନ ଦଅଇ,
ପଶୁର ଆନନ ସଦୃଶ ଦିଶନ୍ତି ତେଣୁ ବିମ୍ବଦୃଶ ।
ସଂଯମ ପଥ ଦୃଢ଼ ମୃଢ଼ ପଶୁ ପରି ଏ କାଟେ କାଳ

---

* ଉଦାସୀ ଷ୍ଟର ଆଚରଣ ପାଗଳର ଆଚରଣ ପରି ଦେଖାଯାଏ ।

ବାହାରେ ନକଲି କାରୁଁକ — ଭିତରେ ହିଂସ୍ରକ ଘାତୁକ ।
ଗୁପ୍ତ ହିଂସ୍ରକ ପଶୁ ହୋଇ — ମୁହଁକୁ ଦ୍ୟନ୍ତି ବଦଳାଇ ।
ଏହାଙ୍କୁ ନର ପଶୁ କହ — ଦୟା ଧରମ ତଳେ ନାହ ।
ପଶୁଏ ନରମୁଖା ପିନ୍ଧି — ହିଂସା ଅସତ୍ୟେ ହୁଅନ୍ତି ଛନ୍ଦି ।
ଯେ ନର ଆତ୍ମଧ୍ୟାନେ ରତ, — ମୂଢ଼ଙ୍କୁ ଦିଶଇ କୁତ୍ସିତ,
ଜଟା ଶ୍ମଶ୍ରୁଳ ମୁଖ ବହି — ପଶୁ ପରିଏ ଦିଶେ ସେହି ।
ମୂଢ଼େ ଜପିଣ ମୋର ମୋର — ମଣନ୍ତି ନିଜକୁ ଚତୁର,
ସୁରୁଚି କରିଣ ମୁଖକୁ — ସୁନ୍ଦର ଭାବନ୍ତି ନିଜକୁ
ତାମସୀ କାଜ ବୃଷ୍ଠା ଭୁଞ୍ଜେ — ନିଜକୁ ସିଆଣା ସେ ଭାବେ ।
ମତ୍ତ ପାଗଳ, ନଗ୍ନ ଯୋଗୀ — ବିରୂପ ପଶୁ, ସର୍ବତ୍ୟାଗୀ
ଏମାନେ ମୂଢ଼ଙ୍କ ଆଖିରେ — ଦିଶନ୍ତି ଏକା ପରକାରେ ।
ମାଟି ସୁବର୍ଣ୍ଣେ ଭେଦାଭେଦ — ନ ବୁଝେ ପାଗଳର ମୁଣ୍ଡ,
ମାଟି ସୁନାକୁ ଏକା ମଣି — ଖେଳେ ପାଗଳ ହସ୍ତେ ଘେନି ।
ମୃତ୍ତିକା ପାଷାଣ ସୁବର୍ଣ୍ଣ — କୁହଇ କେହି ଭିନ୍ନାଭିନ୍ନ
ଭଲେ ଏହାକୁ ଜାଣେ ଯୋଗୀ — ସୁନାକୁ ତେଣୁ ଦିଏ ଫିଙ୍ଗି ।
ମୂଢ଼େ ଯା ମଣନ୍ତି ଅନ୍ଧାର, — ଯୋଗୀକି ଦିଶେ ତା ଉଜ୍ଜ୍ୱଳ
ଯାଙ୍କୁ ଉଜ୍ଜ୍ୱଳ ଭାବେ ମୂଢ଼, — ଜ୍ଞାନୀକୁ ସେ ଗାଢ଼ ଅନ୍ଧାର ।
ନିଜକୁ ଭାବିଣ ସୁସଭ୍ୟ — ମାନବ କରୁଅଛୁ ଦର୍ପ ।
ସୁସଭ୍ୟ ମାନବ ଚିତ୍ତରେ — ଗୋପନେ ପଶୁ ବାସକରେ ।
ଜ୍ଞାନ ସଂଯମ ଦାବାନଳେ — ଡରୁଁ ପଳାନ୍ତି ପଶୁମାନେ ।
ହିଂସା ଅସତ୍ୟ କାମ କ୍ରୋଧ — ପଳାନ୍ତି ଛାଡ଼ି ଯୋଗୀହୃଦ ।
ଏଣୁ ଯୋଗୀର ଦେହ ମୁଖ — ମୂଢ଼ଙ୍କୁ ଦିଶଇ କୁତ୍ସିତ ।
ବାହାରେ ଦେବାକୁ ନଜର — ଯୋଗୀର ନ ଥାଏ ଯେ ତର;
ଉଦାସୀ ଗୂଢ଼ ଏହା ଚିନ୍ତ — ଇଷ୍ଟଦେବଙ୍କୁ କରେ ସ୍ତୁତି ।

ବିଘ୍ନନାଶନ ଗଣେଶ୍ୱର, ଏତିକ ପ୍ରାର୍ଥନା ମୋହର,
ହୁଏ ମୁଁ ପଚ୍ଛେ ଜାନୁଆର ରହୁ ମୋ ଚିତ୍ତ ସମୁଜ୍ଜ୍ୱଳ,
ଧିଶେ ମୁଁ ପଚ୍ଛେ ବିକଟାଳ ସଂସାରେ ଥାଉ ହୃଦ ମୋର .
ଲୋକେ ଭାବନ୍ତୁ ପଚ୍ଛେ ଜଡ଼ ଅମ୍ଭାକୁ ଚିହ୍ନୁ ହୃଦ ମୋର ।
ଅପୂର୍ବ ଅଟେ ଏହି ଗ୍ରନ୍ଥ ପଢ଼ିଲେ ଏହା ହରେ ଦୁଃଖ ।
ମୁଁ ଅଟେ ମୂଢ଼ ଅକିଞ୍ଚନ ଦୋଷ ମୋ ନ ଧର ସୁଜନ ।
ଶ୍ରୀ ଗୁରୁଅଙ୍କ ଶିରେ ଘେନି, ଗୀତରେ ଏହାକୁ ବଖାଣି
ସମାଜ ଚିବ ବ୍ରିଷ୍ଟ ଧର୍ମ କହିତେ କରିଲି ବଖ୍ୟାନ ।

ଇତି ଶ୍ରୀ ଧର୍ମବାକ୍ୟେ ଦ୍ୱିତୀୟ ଖଣ୍ଡେ ବୃହସ୍ପତି ବ୍ରହ୍ମା କଥୋପକଥନେ ଗୃହସ୍ଥମାନଙ୍କର ନୈତିକ ଅଧୋଗତି ବର୍ଣ୍ଣନ ନାମ ଚତୁର୍ଥ ଅଧ୍ୟାୟ ।

—※—

## ପଞ୍ଚମ ଅଧ୍ୟାୟ

ପାରିବାରିକ ଜୀବନରେ ଅଶାନ୍ତି ଓ ନରକ ଯନ୍ତ୍ରଣା

୧ । ପ୍ରଶ୍ନ— ଟଙ୍କା ବଳରେ ସ୍ୱାମୀ କିପରି ସ୍ତ୍ରୀକୁ ଅଇନ-ସଙ୍ଗତ ବେଶ୍ୟା ଭାବରେ ବ୍ୟବହାର କରୁଛି ଏବଂ ନିଜେ କିପରି ସ୍ତ୍ରୀର କାଙ୍କର ହୋଇ ପଡ଼ୁଛି ?

ବୃହସ୍ପତି ଉବାଚ

ଦେବଙ୍କ ଗୁରୁ ବୃହସ୍ପତି ବିନାଥ ଛାମୁରେ ଜଣାନ୍ତି;
ବିନାଥ ଗୋସାଇଁ ହେ ଶୁଣି ଦେବତାମାନଙ୍କ ଜଣାଣି ।

ଗୃହସ୍ଥାଶ୍ରମ ଆଜ ନାହିଁ    ଭୁଷୁଡ଼ି ପଡ଼ିଲାଣି ସେହି ।
ଅତିଥି ଅଭ୍ୟାଗତଗଣ    ଅଟନ୍ତି ସ୍ୱୟଂ ନାରାୟଣ
ତାହାଙ୍କୁ ପୂଜାଇବା କେହି    ଗୃହସ୍ଥ ଆଜ ନ କରଇ ।
ଧନୀ ମଧ୍ୟସ୍ଥ ପରିବାର    ନରକଠାରୁ ଭୟଙ୍କର ।
* ସ୍ତିରୀଏ ଶାସନ ଚଳାନ୍ତି    ପରଦା ଅନ୍ତରାଳେ ଥାନ୍ତି ।
କୁଳଟା ପର କୁଳନାରୀ    ନାନା ଫରମାସି କରେ ଜାରି,
ଗହଣା ଶାଢ଼ୀପାଇଁ ସେହି    ସ୍ୱାମୀକି ଆଦର କରଇ
ପ୍ରସବ ଛଡ଼ା ଆନ କର୍ମେ    ଘୋର ଅନାସ୍ଥା ତା ମରମେ
କଳା ଲାଗିବା ଭୟେ ସେହି    ରାନ୍ଧିବା ପାଇଁ ନ ଇଚ୍ଛଇ ।
ଯଦିବା ରାନ୍ଧିବା ଇଚ୍ଛଇ,    ସବୁ ଯୋଗାଡ଼ ଥିବା ଚାହିଁ ।
ପେଟ ବେଦନା ମଥା ଘୂରି,    ଏ ତାର ଚିରସାଥୀ ପୀଡ଼ା
ଠିକଏ କଷ୍ଟ ଅଳ୍ପ ପାଇ    ମଥା ମୋ ବିନ୍ଧୁଛି କୁହଇ ।
ଅନ୍ଧ ବିଶ୍ୱାସ ଛୁଆଁ ଛୁତ    ଏଥେଁ ସବଙ୍କ ସ୍ତିରିଜାତ ।
କର୍ମକର୍ମୀଣି ପୂଣ୍ୟ ପର୍ବ    ଏଥେଁ ଅକାଟ୍ୟ ତା ପ୍ରସ୍ତାବ,
ଟେରସ୍ତ ଭାରଯା ପ୍ରୀତିରେ    ସଙ୍କୀର୍ଣ୍ଣ ସ୍ୱାର୍ଥ କ୍ରୀଡ଼ା କରେ
କଣା ବିକାର ରୀତିମାନ    ପ୍ରେମେ ରହିଲେ ଅଶୋଭନ;
ଶରୀର ଧାରଣର ପାଇଁ    ଦୁହେଁ ସ୍ୱାଧୀନ ଥିବା ଚାହିଁ ।
ଭେଟି ଟେରସ୍ତ ତାର ଅର୍ଥ    ଭାରଯାଠାରୁ କଣେ ରୂପ
ଭାରଯା ବକ ତାର ରୂପ    ସ୍ୱାମୀଠୁଁ କଣେ ଲୁଗା ଭାତ
ଉପାର୍ଜନରେ ଥିଲେ ଶକ୍ତି,    ଟେରସ୍ତ ଲଭେ ଭାର୍ଯ୍ୟାପ୍ରୀତି
ସ୍ତ୍ରୀଠାରୁ ଆଦର ଯତନ    ଟଙ୍କା ବଳରେ କଣେ ଜନ ।
ଟଙ୍କାରେ ସୁନା ଶାଢୀ ଭାତ    ଭାର୍ଯ୍ୟାକୁ ଯୋଗାଏ ଟେରସ୍ତ ।

* ଟଙ୍କାହିଁ ସ୍ୱାମୀ ସ୍ତ୍ରୀର ପ୍ରୀତିର ପରିମାପକ ହୋଇଅଛି ।

ସ୍ୱାମୀଠୁଁ ହାତଲୁଗା ନେଇ  ଭରସା ସ୍ୱାମୀରେ ରସଇ ।
ଭାତଲୁଗା କେ ନ ଯୋଗାଇ  ସ୍ତ୍ରୀଠାରୁ ପ୍ରୀତି ପାଏ ନାହିଁ ।
ଜାରଠୁଁ ନେଇ ନାନା ଅର୍ଥ  ବେଶ୍ୟା ବିକଇ ତାର ରୂପ ।
ତେସନେ ଭାତ-ସୁନା ଶାଢ଼ୀ  ନିଜେ ନ ଅର୍ଜି କୁଳନାରୀ
ପର ଉପରେ ନିର୍ଭରନ୍ତି  କୁଳଟା ବେଭାର ଧରନ୍ତି ।
ହୃଦୟେ ହୃଦୟ ମିଳନ  କରେ ନି ଟଙ୍କା ବା ସୁବର୍ଣ୍ଣ,
ଭାତ ଲୁଗା ଏ ଦୁଇ ବସ୍ତୁ  * ସ୍ୱାମୀ ସ୍ତ୍ରୀ ଉଭୟେ ଅର୍ଜନ୍ତୁ,
କେ କା'କୁ ନ କରୁ ଶୋଷଣ,  କେ କା'ର ନୋହୁ ପରାଧୀନ ।
ଅର୍ଥରେ ହୋଇ ବଳବନ୍ତ  ଭାର୍ଯ୍ୟାକୁ ଶୋଷଇ ଟେରନ୍ତ,
ଅର୍ଜିବା ଶକ୍ତି ଟେରନ୍ତର  ଏକଚାଟିଆ ଅଧିକାର ।
ନାରୀକ ଅନ୍ଧାରେ ସେ ରଖି,  ଅବୁଝେ ଅର୍ଜନ ଶକତିକ ।
ଭାର୍ଯ୍ୟାର ମନ ଜାଣି ସେହି  ସବୁ ଯୋଗାଇ ପାରେ ନାହିଁ,
ଏଣୁ ବିଖଣ୍ଡ ଉପୁଜଇ  ଗୃହ ନରକ ପାଲଟଇ ।
ନାରୀ ଅରଜି ଲୁଗା ଭାତ  ନିଜର କରୁ କରାୟତ୍ତ ।
ଆପଣା ପେଟପିଠି ପାଇଁ  ଆନକୁ ନ ରହୁ ସେ ଚାହିଁ ।
ଆପଣା ହୃଦୟକୁ ନାରୀ  ନ ବିକୁ ନେଇ ସୁନାଶାଢ଼ୀ ।
ଶାଢ଼ୀ ସୁବର୍ଣ୍ଣ ପାଇଁ ନାରୀ  ନ ହେଉ ପୁରୁଷ କିଙ୍କରୀ ।
ମାତଙ୍ଗ ପରାଏ ପୁରୁଷ  ନ ହେଉ କନ୍ଦର୍ପର ଦାସ ।
ମୁକ୍ତି ଆଲୋକ ରଶ୍ମି ସୁଖ  ଭୁଞ୍ଜାଉ ନାରୀକୁ ପୁରୁଷ ।
ରଖି ପରଦା ଅନ୍ତରାଳେ  ନ ଜଗୁ ନାରୀକ ବୃଥାରେ ।
ବୃହସ୍ପତି ଯେ ବନୟରେ  ଘୋଷନ୍ତି ନାଥ ଛାମୁରେ ।

* ସ୍ତ୍ରୀ ତାର ରୂପଦ୍ୱାରା ଓ ସ୍ୱାମୀ ତାର ଧନଦ୍ୱାରା ପରସ୍ପରକୁ ଶୋଷଣ କରନ୍ତି ।

ହେ ବ୍ରହ୍ମା ବିଷ୍ଣୁ ମହେଶ୍ୱର — ଦେବ ଗଣାଣେ ହେତୁ କର ।
ମାନବେ ଅସୁରର ସାଜ — ଧରଣୀ ଉଦ୍‌ଧାରୀ ହୁଅନ୍ତି
ମୂଢ ହୋଇଲେ ନର ନାରୀ — ତୁମର ପଥ ଦେଲେ ଛାଡ଼ି ।
ମହାଯୋଗୀ ହେ ମହେଶ୍ୱର — ହୋଇଛ ତୁମେ ଦିଗମ୍ବର ।
ଏଣୁ ତୁମର ଅର୍ଦ୍ଧାଙ୍ଗିନୀ — ପାର୍ବତୀ ଜଗତଜନନୀ
ସ୍ୱେଚ୍ଛାରେ ହୋଇ ଦିଗମ୍ବରୀ — ଗ୍ରାମ ପ୍ରାନ୍ତରେ ଛନ୍ତି ପଡ଼ି ।
ଅନ୍ନ ବସନ ଅଳଂକାର — ଲୋଡା ତ ନାହିଁ ମାଆଙ୍କର ।
ଅନ୍ନ ବସନ ଟଙ୍କା ସୁନା — ଶିବଙ୍କୁ ନ ମାଗନ୍ତି ଉମା ।
କେବଳ ଶିବ ସଙ୍ଗୀ ହୋଇ — ରହିବା ଇଚ୍ଛେ ମହାମାଈ ।
ଶଙ୍କର ଚିର ବ୍ରହ୍ମଚାରୀ — ପାର୍ବତୀ ରୂପେ ନୁହେଁ ଧାରି ।
ପାର୍ବତୀ ନ ଇଚ୍ଛନ୍ତି ବସ୍ତ୍ର — ଶିବ ଲୋଡ଼ନ୍ତି ନାହିଁ ରୂପ ।
ଏଣୁ ହୃଦୟ ଦୁହିଙ୍କର — ପ୍ରଗାଢ଼ ପ୍ରେମରେ ଉଦ୍‌ବେଳ ।
ଉମାଙ୍କ ସଙ୍ଗତେ ଶଙ୍କର — ହୁଅନ୍ତି ଅର୍ଦ୍ଧନାରୀଶ୍ୱର,
ଏକଥା ଭୁଲି ମୂଢ଼ ନର — ଜୀବନେ କଲେ ଟଙ୍କା ସାର ।
ପ୍ରୀତିକି କରିଲେ ତଉଲ — ସୁନା ଶାଢ଼ୀରେ ନାରୀ ନର ।
ସ୍ତ୍ରୀ ପୁରୁଷ ପରସ୍ପରେ — ଶୋଷଣ କରନ୍ତି ଚତୁରେ ।
ଇନ୍ଦ୍ରିୟ ଦାସ ହୋଇ ନର — ହୁଅଇ ନାରୀର କିଙ୍କର ।
ଅନ୍ନ ବସନେ ପରାଧୀନ — ରମଣୀ ଭୁଞ୍ଜଇ କଷଣ ।
ଖିଆଲେ ବଶେ ପଡ଼ି ଜନ — ନ ରଖେ ଯଦି ନାରୀମନ
ଉଗ୍ରଚଣ୍ଡିକା ମୂର୍ତ୍ତି ଧରି — ଦିଅଇ ପୁରୁଷକୁ ଗାଳି,
ପୋଷିବୁ ବୋଲି ପରି ତୁହି — ଖଣ୍ଡିଆ ଥିଲୁ ବାହା ହୋଇ ।
ପେଟ ମୋ ଯଦି ନ ପୂରିଲା — ଲଙ୍ଗଳା ଯଦି କାୟା ହେଲା
ଥିବା ନ ଥିବା ତୋ ସମାନ — ହେଣୁ ମୁଁ ହେଲି ହୀନମାନ ।



[ ଅନ୍ନ ବସନ ଟଙ୍କା ସୁନା,   ଶିବଙ୍କୁ ନ ମାଗନ୍ତି ଉମା ।

× × ×

ଏଣୁ ହୃଦୟ ଦୁହିଁଙ୍କର,   ପ୍ରଗାଢ଼ ପ୍ରେମରେ ଉଦ୍‌ବେଳ ।
ଏ କଥା ଭୁଲି ମୂଢ଼ ନର,   ଜୀବନେ କଲେ ଟଙ୍କା ସାର ।
ପ୍ରୀତିକି କରିଲେ ତରଳ,   ସୁନା ଶାଢ଼ୀରେ ନାରୀନର । ]

—ପୃ ୭୨

× × ×

ତୁମେ ତ ପ୍ରଭୁ ଦାମୋଦର    ଲକ୍ଷ୍ମୀଟୁଟରେ ତୁହଁ ଭୋଳ
କଣୁ ତ ନାହଁ ଲକ୍ଷ୍ମୀମନ,    ଦେଇଣି ଶାଢ଼ୀ ବା ସୁବର୍ଣ୍ଣ
ହେ ବନ୍ଧୁ ତୁମଠାରୁ କନ୍ତୁ    କମଳା ଦେବୀ ନ ଇଚ୍ଛନ୍ତ୍ୟ,
କେବଳ ହୃଦୟ ତୁମର    ପାଇବା ପାଇଁ ଇଚ୍ଛା କର
ନିଜକୁ ମଣି ଭାଗ୍ୟବତୀ    ତୁମର ପାଦକୁ ସେବନ୍ତ୍ୟ ।
* ପୁରୁଷ ଧର ବନ୍ଧୁ ପଥ    ହୋଇଣି ରହୁ ଅନାସକ୍ତ
ନାରୀଏ ମହାଲକ୍ଷ୍ମୀ ପର    ସୁନା ଶାଢ଼ୀର ଲୋଭ ଛାଡ଼ି
ସଚ୍ଚିଦାନନ୍ଦର ସନ୍ଧାନ    କରନ୍ତୁ କମଲା-ସମାନ ।
ନାରୀ ପଛରେ ଧାଏଁ ନର    ଏ ଅଟେ ପଶୁର ବେଭାର ।
ଏ ରୀତ ଦେଲେ ଓଲଟାଇ    ମାନବ ଧର୍ମ ପ୍ରକାଶଇ ।
ଧନ ଗରବ ଛାଡ଼ି ନର    ସଂଯମ ପଥେ ରହୁ ଦୃଢ଼
ରୂପର ମୋହ ତେଜି ନାରୀ    ସୁନାଗହଣା ଦେଉ ଛାଡ଼ି ।
ପୁରୁଷ ହେଲେ ଅନାସକ୍ତ    ନାରୀ ହୋଇବ ତାର ଭକ୍ତ,
ତେଜିଲେ ଦୃଢ଼େ ସୁନା ଶାଢ଼ୀ    ହୋଇବେ ଶକ୍ତିମୟୀ ନାରୀ ।

× × ×

ପୁରୁଷ ଜାର ରୀତ ଧରେ    ଟଙ୍କାରେ ନାରୀମନ ହରେ
ସୁନାଶାଢ଼ୀରେ ପ୍ରୀତ ରଖି    ନାରୀ ଧରଇ ବେଶ୍ୟାରୀତ,
ଅର୍ଜନ ଶକ୍ତି ଥିବାଯାଏ    ପୁରୁଷ ଖାତିରକୁ ପାଏ ।

* ପୁରୁଷହିଁ ଶକ୍ତିଧର ଓ ନାରୀହିଁ ଶକ୍ତିମୟୀ । ପୁରୁଷ ଟଙ୍କା ମୋହ ଛାଡ଼ି ଅନାସକ୍ତ ରହି ପାରିଲେ ପଶୁପରି ସ୍ତ୍ରୀ ପଛରେ ଗୋଡ଼ାଏ ନାହିଁ; ଫଳରେ ନାରୀ ତାହାର ରୂପଦର୍ପ ଛାଡ଼ି ପ୍ରକୃତ ଶକ୍ତିମୟୀ ହୁଏ ଏବଂ ପୁରୁଷ ପଛରେ ରହି ତାହାକୁ ଶକ୍ତିଶାଳୀ କରେ ।

ରୂପ ଝଲକ ଥିବାଯାଏ ନରଙ୍କୁ ନାରୀ ମୋହୁଥାଏ,
ଅର୍ଜନେ ହୋଇଲେ ଅକ୍ଷମ ସର୍ବେ ଇଚ୍ଛନ୍ତି ତା ମରଣ ।
ଲୁପ୍ତ ହୋଇଲେ ନାରୀରୂପ ପୁରୁଷ ନ ମାଡ଼େ ତା ପାଖ ।
ଏଣୁ ସକଳ ପରିବାରେ ଘୋର ଅଶାନ୍ତ ବାସ କରେ,
ସଂଯମ ପଥେ ନରନାରୀ ଚଳନ୍ତୁ ନିଜ ସ୍ୱାର୍ଥ ଛାଡ଼ି;
କେ କା'ର ସୁତ ଅବା ସ୍ୱାମୀ କିଏ ବା କାହାର ତରୁଣୀ ?
ଦୁଇଟା ମାତ୍ର ଧନ ପାଇଁ ଏଥେ ଏକାଠି ହୋଇଥାଇ ।
ଧର୍ମଶାଳା ପରି ଘର, ଧନ ଦୁଇଟା ଏଥେଁ ମେଳ ।
ଆସିଛେଁ ଏକା ଯିବା ଏକା କେ କୁହେଁ କାର ସାଥୀ ସଖା ।
"ମୋର ଭାରିଯା, ମୋର ଘର ମୋର ସମ୍ପଦ, ସୁତ ମୋର,
ଏମନ୍ତେ ଜପି ମୋର ମୋର ଘାରି ହୁଅନ୍ତି ନାରୀ ନର ।"
ପୂର୍ବରୁ ସଙ୍କେତ ନ ଦେଇ ମୃତ୍ୟୁ ଯେ ଆସି ଅକର୍ଷଇ
ଚୂନକାଳଙ୍କ ଗାଲେ ବୋଲି ମୃତକୁ ନେଇଯାଏ ତଡ଼ି,
ମୋର ମୋର ଯେ ଜପୁଥାଏ କେ କିସ ସଙ୍ଗେ ନେଇଯାଏ ?
ପାରିବାରିକ ବନ୍ଧନରେ ପଡ଼ି ଅସୁର ହୋନ୍ତି ନରେ ।
ପିତା ଭରତା ଦାରିସୁତ, ସରବେ ସ୍ୱାର୍ଥରେ ଗ୍ଲଳିତ,
ଘୋର ଅଶାନ୍ତ ମନସ୍ତାପ ଏଥେଁ ଗୃହସ୍ଥ ଜର୍ଜରିତ,
ଅର୍ଥହିଁ ଅନର୍ଥର ମୂଳ ଏଥେଁ ଆସକ୍ତ ନୋହି ନର ।
ଶରୀର ଧାରଣର ପାଇଁ ସର୍ବେ ସ୍ୱାଧୀନ ହେବା ଛୁହିଁ,
ପରସ୍ପରର ସହଯୋଗେ ସୃଜନ୍ତୁ ଅନ୍ନ ବସ୍ତ୍ର ସର୍ବେ ।
ଯଦି ପୁରୁଷ ମୂର୍ଢ଼ପରି ନାରୀକୁ ଦିଏ ଘରୁ ତଡ଼ି
ଅଥବା ଉପାର୍ଜନ କ୍ଷମ— ସ୍ୱାମୀର ଘଟିଲେ ମରଣ
ନାରୀ ହୁଅଇ ଅନାଥିନୀ, ଅନ୍ଧାର ଦଶଇ ଅବନୀ ।
ଯେଣୁ ପୁରୁଷ ଅଧୀନରେ ରହିଥିଲା ସେ ଅଜ୍ଞାନରେ,

ନିଜ ଶରୀର ରକ୍ଷାପାଇଁ ସ୍ୱାମୀ ହାତକୁ ଥିଲ ଚାହିଁ ।
ଏଣୁ ଯେ ଆଉ ବେଳକାଳ ନାରୀ ହୁଅନ୍ତୁ ହୁସିଆର ।
ଧରିବା ପାଇଁ ନିଜ ପ୍ରାଣ କାହାର ନୁହନ୍ତୁ ଅଧୀନ,
ଅପଣା ଅନ୍ନ ଯେ ବସନ କରନ୍ତୁ ନାରୀଏ ସୃଜନ ।
ପୁରୁଷ ଦେଟଲିକ କପଣି, ତହିଁ ନ କରି ମତଛନ୍ନ
ଆପେ ଅପଣା ଲୁଗାଭାତ କରନ୍ତୁ ନାରୀ ଉପାର୍ଜିତ ।

୧୦ । ପ୍ରଶ୍ନ—ବ୍ୟକ୍ତିଗତ ସ୍ୱାର୍ଥରେ ସଞ୍ଚିତ ଧନସମ୍ପତ୍ତି ଆଇନ-ସଙ୍ଗତ ଚୋରିମାଲ ଛଡ଼ା ଆଉ କିଛି ନୁହେଁ କପରି ?

ଦେବଙ୍କ ଗୁରୁ ବୃହସ୍ପତି ବିନାଥ ଅଗ୍ରତେ ଭାଷନ୍ତି ।
ମାନବେ ଅସୁରର ରୀତି ଧରି ନୃଶଂସ ପାଳୁଅଛନ୍ତି ।
ସଂଗ୍ରହ ମନୋବୃତ୍ତି ଧରି ନିଜ ସ୍ୱାର୍ଥରେ ଗଲେ ଜଡ଼ି ।
* ଯାହାର ବୁଦ୍ଧି, ତାର ଧନ, ସେ ଜନ ଲଭଇ ସମ୍ମାନ ।
ନ ଖାଇ ଅନ୍ନ ସେ ଫିଙ୍ଗଇ ପଡ଼ୋଶୀ କ୍ଷୁଧାରେ ମରଇ,
ବହୁ ଜମି ସେ ଅଗୁରଇ, ଆନ କା ଚୁଲି ଜଳେ ନାହିଁ ।
ଭାବଇ ବୁଦ୍ଧି ବଳେ ମୁହିଁ ଧନସମ୍ପତ୍ତି ଅର୍ଜିଛଇଁ ।
ଆନ କେ ଖାଇଲା ବା ନାହିଁ ଏହା ଭାବିବ କାହିଁପାଇଁ ?
ମୋର ଏ ଯେଉଁ ଜମିଦାରୀ ନଗର ଗ୍ରାମେ କୋଠାବାଡ଼ି
ବାପା ଅଜା ମୋ କରି ବୁଦ୍ଧି ଏହାକୁ ଅଛନ୍ତି ଅରଜି ।

---

*ଯାହାର ବୁଦ୍ଧି ଅଛି ସେହିମାନଙ୍କ ପାଖରେ ସବୁ ଧନ ଯାଇ କେନ୍ଦ୍ରୀଭୂତ ହୋଇ ଯାଉଛି ଏବଂ ବୁଦ୍ଧିଆ ଲୋକ ସ୍ୱାର୍ଥପର ଭାବରେ ଏହି କେନ୍ଦ୍ରୀଭୂତ ଧନକୁ ନିଜର ଭୋଗ ବିଳାସରେ ଲଗାଇ ସଂଖ୍ୟା-ଗରିଷ୍ଠ ନିର୍ବୁଦ୍ଧିଆମାନଙ୍କୁ ଶୋଷଣ କରୁଛି ।

ମୋହର ଟଙ୍କା ବଳେ ମୁହିଁ ଏ କାରଖାନା ସର୍ଜିଛଇ,
ମୋହର ପିଲାପିଲି ପାଇଁ ଏ ଧନ ସଞ୍ଚି ମୁଁ ଅଛଇଁ
ମୋ ବଂଶେ ଯେତେ ଜନ୍ମହେବେ ଅଭାବେ କେବେ ନ ପଡିବେ ।
ଏଣୁ ଏ ଧନ ମୁଁ ସଞ୍ଚଇ ପିଲଙ୍କୁ ବଞ୍ଚାଇବା ପାଇଁ ।
ଏମନ୍ତ ଭ୍ରାନ୍ତ ଯୁକ୍ତି କରି, ସଞ୍ଚନ୍ତ ମରଣକୁ ଭୁଲି ।
ନିଜ ସ୍ୱାର୍ଥରେ ସଞ୍ଚେ ଧନ ଅମ୍ଭାକୁ ଭୁଲି ମୂଢ଼ଜନ,
ଫନ୍ଦ ଫିକର ମିଥ୍ୟାଶ୍ରିତ ଏମାନ ସୂକ୍ଷ୍ମ ଚୌର୍ଯ୍ୟ ବୃତ୍ତି,
ଏ ଅନ୍ଧ କଉଶଳ ବଳେ ଧନକୁ ସଞ୍ଚନ୍ତ ଚତୁରେ ।
ସ୍ୱାର୍ଥ-ସଞ୍ଚିତ ଯେତେ ଧନ ଏଥୁ ନ ପାଏ ସୁଖ ଜନ ।
ଚେତନା ଭୋଜନ ଶୟନ ଧନ ସଞ୍ଚଇ ନିଶି ଦିନ ।
ଚୋର ଭୟରେ ଦକା ପାଇ ରାତ୍ରରେ ନିଦ ହୁଏ ନାହିଁ
ସୁତ କଳତ୍ର ଭୃତ୍ୟ ଜନେ ସଦା ସନ୍ଦେହ କରେ ମନେ
ଭାବଇ ଧନକୁ ଏମାନେ ଉଜାଡ଼ ଦ୍ୟନ୍ତ ମୂର୍ଖପଣେ
ରାତଦିନ ମୁଁ ଖଟି ଖଟି ଆଣେ ଯେ ଧନକୁ ସାଉଁଟି,
ଏମାନେ କାହୁଁ ତା ଜାଣିବେ ମୋତ ଦୁଃଖକୁ ସମଝିବେ
ଏମନ୍ତେ ସ୍ୱାର୍ଥେ ମାତ୍ର ନରେ ଧନ ସଞ୍ଚନ୍ତ ଅକାତରେ ।
ସ୍ୱାର୍ଥେ ସଞ୍ଚିତ ଧନମାନ ଅଟନ୍ତ ଚୋରିମାଲ ସମ
ଏହା ସମଝି ସୁଜ୍ଞ ଜନ ସଞ୍ଚଯ୍ୟେ ନ ବଳାଏ ମନ ।
ସଙ୍କାର୍ଥେ ଧରି ରହେ ପ୍ରାଣ, ସତ୍ପଥେ କରଇ ଅର୍ଜନ,
ଶରୀର ଧାରଣର ପାଇଁ ଯେତିକ ଲୋଡ଼ା ତାହା ଖାଇ
ବଳକା ଯେତେକ ତା ଧନ କରଇ ସେବାଯଜ୍ଞେ ଦାନ ।
ସ୍ୱାର୍ଥେ ସଞ୍ଚିତ ହେଲେ ବିତ୍ତ ଅବଶ୍ୟ ଉପୁଜେ ଅନର୍ଥ ।
କାଳର ସୂକ୍ଷ୍ମ ରୁଦ୍ରଶକ୍ତି ହୁଅଇ ପ୍ରକୁପିତ ଅତି ।
ଗ୍ରାମ ନଗରେ ଗଣ୍ଡି ଚୋର ପ୍ରବଳ ହୋନ୍ତ ବେଳୁବେଳ

ଶୋଷିତ ସର୍ବହରା ନରେ ଉନ୍ମତ୍ତ ହୁଅନ୍ତି ହିଂସାରେ ।<br>
କ୍ଷିପ୍ତ ଜନତା କ୍ରୋଧଭରେ ପ୍ରଳୟଙ୍କରୀ ମୂର୍ତ୍ତି ଧରେ ।<br>
ମହା ପ୍ରଳୟ ବାତ୍ୟା ବହ୍ନି ସଭିଙ୍କୁ ନିପାତ କରଇ,<br>
ଧନୀଠୁଁ ନିଏ ଧନ ଲୁଟି ସ୍ୱାମୀ କୋଳୁ ତା ରମଣୀକି<br>
ପୁତ୍ରବତୀର କୋଳୁ ପୁତ୍ର ଝିଙ୍କି ନିଏ ସେ ମହାକାଳ ।<br>
ଏଣୁ ନ କହୁ ମୋର ମୋର, ଆତ୍ମାକୁ ଚିହ୍ନେ ସୁଜ୍ଞ ନର ।<br>
ସମ୍ପଦ ଦାରା ସୁତ ଘର ଯାଙ୍କୁ ନ ଭାବ ଅପଣାର<br>
ସକଳ ଜନଙ୍କ ହୃଦରେ ନିଜ ଆତ୍ମାକୁ ଦେଖି ପାରେ ।<br>
ମୂଢେ ଏହାକୁ ନ ବୁଝନ୍ତି, ଦେହକୁ ଆତ୍ମା ସମଝନ୍ତି ।<br>
ଇନ୍ଦ୍ରିୟ ସୁଖେ ଦେଇ ମନ, କଷ୍ଟେ ଅର୍ଜନ୍ତି ନାନା ଧନ ।<br>
ଇନ୍ଦ୍ରିୟେ ଧରି ଖଣ୍ଡବୃତ୍ତି, ଅବାଟେ ତାହାକୁ ଚଳାନ୍ତି ।<br>
ବ୍ୟକ୍ତି ତା ଅଭାବକୁ ଯେବେ, କରିବ ନିର୍ଦ୍ଧାରଣ ନିଜେ,<br>
ଅଳ୍ପ କେତେକ ବୁଦ୍ଧିମାନ ଲୁଟି କରିବେ ସବୁ ଧନ ।<br>
ସଂଖ୍ୟା ଗରିଷ୍ଠ ବୁଦ୍ଧିହୀନ ଶୋଷଣୁ ଲଭିବେ କଷଣ<br>
ବ୍ୟକ୍ତିର ଅଭାବ ଯେମାନ ରାଷ୍ଟ୍ର କରିଲେ ନିର୍ଦ୍ଧାରଣ<br>
ମୁକ୍ତ ଭାବନା ଚିନ୍ତାଧାରା ଲୁପ୍ତ ହୋଇବ ରାଜ୍ୟସାରା ।<br>
ଏଣୁ କ୍ଷମତା ଧନଜନ ଯୋଗୀ କରଇ ବିସର୍ଜନ<br>
ଯୋଗୀର ଗୌରବ ବଢିଲେ ସମାଜ ରହିଲେ ସୁରୁଖୁରେ ।<br>
ଦାରିଦ୍ରର ଫକିର ଯେ ହୋଇ ରାଜଗାଦିକି ବିସର୍ଜଇ<br>
ତାର ପ୍ରଭାବୁଁ ଧନୀଗଣ ସ୍ୱାର୍ଥେ ସଞ୍ଚନ୍ତି ନାହିଁ ଧନ<br>
ତାର ପ୍ରଭାବୁଁ ରାଷ୍ଟ୍ରପତି ମୁକ୍ତ ଚିନ୍ତାକୁ ନ ରୋକନ୍ତି<br>
ତା ଯୋଗୁଁ ସର୍ବହରା ନର ମଣେ ନିଜକୁ ଭାଗ୍ୟଧର ।<br>
ତା ଯୋଗୁଁ ଧନୀଠାରୁ ସେହି ଉଚ୍ଚ ଆସନେ ବସେ ଯାଇ ।

× × ×

ଏମନ୍ତେ ଗୁରୁ ବୃହସ୍ପତି ବିନାଥ ପାଶରେ ଜଣାନ୍ତି
ବିନାଥ ଗୋସାଇଁ ହେ ଶୁଣ ଦେବତାମାନଙ୍କ ଜଣାଣ
ସୃଷ୍ଟି ପାଳନ ଯେ ଶାସନ ଏ ତିନି ଅଟେ ତବ କାମ ।
ଅସୁରେ ଧରି ହିଂସାବୃତ୍ତି ତୁମର ପଥକୁ ତେଜନ୍ତି ।
"ବଳ ଯାର ସେ ରାଜା ହୁଏ, ବୁଦ୍ଧି ଯାର ସେ ବସି ଖାଏ" ।
ଏହୁ ଅସୁର ମତିବଳେ କପଟାଚାରୀ ହେଲେ ନରେ ।
କାମ ଯେ ଘୋର ପାପାସୁର, ଅନ୍ତର ଭିତରେ ଅସୁର
ତାହାର ପାଲରେ ପଡ଼ିଲେ ସର୍ବେ ଅସୁର ପାଲଟିଲେ ।
ବଶ କଲେକ ମୋହେ ମାତି, ବାହାର ଜଡ଼ ପ୍ରକୃତିକି ।
ଏଣୁ ସ୍ୱାର୍ଥରେ ଗଲେ ବୁଡ଼ି ସମାଜ ସେବା ଦେଲେ ଛାଡ଼ି ।
ଅସୁରଙ୍କର ବଳଦର୍ପ, ବିନାଥେ ଏବେ କର ଲୋପ ।
ଘୋର ଆସୁରୀ ହିଂସାବୃତ୍ତି ମିଥ୍ୟା କପଟ, କୁଟମତି,
ଘୋଟିଛି ସାରା ଦୁନିଆରେ, କର ଉଦ୍ଧାର ଏଥୁଁ ଭଲେ ।
ଅତି ମୂଢ଼ ମୁଁ ଅକିଞ୍ଚନ ଦୋ ମୋଷ ନ ଧର ସୁଜନ,
ସମାଜଗତ ରାଜନୀତି ଏଥେ କହିଁଛି ଅଛି ଲେଖି ।
ସୃଷ୍ଟି ସ୍ଥିତି ଯେ ସଂହାରଣ ଘଟେ ଜୀବନେ ଅନୁକ୍ଷଣ ।
ଏହା ସମଷ୍ଟି ସୁଜନର ସଂଯମପଥେ କାଟେ କାଳ,
ଦ୍ୱାରର ଏ ତିନି ଶକ୍ତିକି ମାନଣି ଜ୍ଞାନୀ ଚଳେ ନିତି ।

ଇତି ଶ୍ରୀ ଧର୍ମରାଜ୍ୟେ ଦ୍ୱିତୀୟ ଖଣ୍ଡେ ବୃହସ୍ପତି ଜଣାଣେ ପାରିବାରିକ ଜୀବନରେ ଅଶାନ୍ତି ଓ ନରକ ଯନ୍ତ୍ରଣା ବର୍ଣ୍ଣନ ନାମ ପଞ୍ଚମ ଅଧ୍ୟାୟ ।

—* ସମାପ୍ତ *—

Printed by B. K. Kar, B. A.,
at the Saraswata Press, Cuttack—1950

[ ଜଣେ ବୈଶ୍ୟଙ୍କୁ ଡ଼କ୍‌ଟେଠେର
ମୂଷିକ ଷଡ ଧ୍ୱଂସେ ତାର ]

*    *    *

[ ସାଧାରେ ପୋଷା ମହୁମାଛି—
ପର ଧର୍ମାଙ୍କି ପାଳବତି । ]

# ଶୁଦ୍ଧିପତ୍ର

ପ୍ରିୟ ପାଠକ ପାଠିକାମାନେ ପୁସ୍ତକରେ ଥିବା ମୁଦ୍ରାପ୍ରମାଦ ସଂଶୋଧନ କରି ନଅନ୍ତୁ ।

## ଧର୍ମଗ୍ରନ୍ଥ-ପ୍ରଥମଖଣ୍ଡ

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଭୂମିକା | ୧୬ ପଂ | ବ୍ରହ୍ମାଙ୍କ ପରିକଳ୍ପନା ପଥରେ | ବ୍ରହ୍ମାଙ୍କ ପରିକଳ୍ପନାରେ |
| | ୧୭ ପଂ | ଅହଂସା ବୈସ୍ୱର୍ଯ୍ୟ | ଅହଂସ୍ୱ ବୈସ୍ୱର୍ଯ୍ୟ |
| ୧୧ ପୃ | ୧୪ ପଂ | ଏହା ଯେ ଜନ୍ମଗତ ବାଦ | ଏହା ଯେ ଜନ୍ମଗତଦାବୀ |

## ଧର୍ମଗ୍ରନ୍ଥ-ଦ୍ୱିତୀୟଖଣ୍ଡ

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଭୂମିକା ପୃ ୮/ | | | |
| | ୧୯ ପଂ | ସମଥକ | ସମର୍ଥକ |
| ଭୂମିକା ପୃ ୯/ | | | |
| | ୨୪ ପଂ | ମମତା | କ୍ଷମତା |
| ।୮/ ପୃ | ୩ ପଂ | ବାସ୍ନାଦ | ବାସ୍ନାଦ । |
| ୪୦ ପୃ | ୨ ପଂ | ଙ୍କ ଧାପ ଅବା ମୁଖ | ନାସ୍ୱଙ୍କ ଧାପ ଅବା ମୁଖ |
| ୪୦ ପୃ | ୧୧ ପଂ | କ ଶଯ୍ୟାରେ ନ ଶୋଇବେ | ଏକ ଶଯ୍ୟାରେ ନ ଶୋଇବେ |
| ୪୧ ପୃ | ୧୪ ପଂ | ହୁଁରେ ହେବ ସମରଥ | ତହୁଁରେ ହେବ ସମରଥ |
| ୬୧ ପୃ | ୧୪ ପଂ | ଦୋ ମୋଷ ନ ଧର ସୁଜନ | ମୋ ଦୋଷ ନ ଧର ସୁଜନ |
| ୬୧ ପୃଷ୍ଠାର ପଚ୍ଛପାଖ | | କଣେ ବୈଶ୍ୟଙ୍କୁ ଉଠେଇ୍ଠର | କଠେ ବୈଶ୍ୟଙ୍କୁ ଉଠେଇ୍ଠର |

